# ସମାଲୋଚନା ଭାରତୀ

ଡକ୍ଟର ବାଉରୀବନ୍ଧୁ କର



ଓଡ଼ିଶା ବୁକ୍ ଷ୍ଟୋର

# ସମାଲୋଚନା ଭାରତୀ

ଲେଖକ :

**ଡକ୍ଟର ବାଉରୀବନ୍ଧୁ କର**

ପ୍ରାଧ୍ୟାପକ, ଓଡ଼ିଆ ବିଭାଗ

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

ଭଞ୍ଜବିହାର ବ୍ରହ୍ମପୁର

ପ୍ରକାଶକ :

**ଶ୍ରୀ ଗୋବିନ୍ଦ ଚରଣ ପାତ୍ର**

ଓଡ଼ିଶା ବୁକ୍ ଷ୍ଟୋର,

ବିନୋଦ ବିହାରୀ, କଟକ-୭୫୩ ୦୦୨

ପ୍ରଥମ ସଂସ୍କରଣ : ୧୯୯୧

ମୁଦ୍ରଣ :

**ଆନନ୍ଦ ପ୍ରେସ୍**

ପିଠାପୁର, କଟକ-୧

ମୂଲ୍ୟ : ଶୋଭନ—ପଚିଶ ଟଙ୍କା

ସାଧାରଣ—କୋଡ଼ିଏ ଟଙ୍କା

## SAMALOCHANA BHARATI

By :

**Dr. Bauribandhu Kar**

Reader in Oriya

Berhampur University,

Bhanja Bihar

Berhampur

Published by :

**Sri Gobinda Charan Patra**

Orissa Book Store,

Binod Behari, Cuttack-2

First Edition : 1991

Printed at :

**Ananda Press**

Pithapur, Cuttack-1

Price : Rs. 25 only

ମାନନୀୟ ଶ୍ରୀଯୁକ୍ତ ଡକ୍ଟର ଶ୍ୟାମ ସୁନ୍ଦର ମିଶ୍ର ମହୋଦୟ......

ମହାଶୟ,

ରେଭେନ୍‌ସା କଲେଜ, ଓଡ଼ିଆ ବିଭାଗରେ ରହଣି କାଳରେ ଜୀବନରେ ସୁଖ-ଦୁଃଖ ମୁହୂର୍ତ୍ତିମାନଙ୍କରେ ଆପଣଙ୍କ ସଦୁପଦେଶ ଏବେ ବି ମୋ ପାଇଁ ଅମୂଲ୍ୟ ହୋଇ ରହିଅଛି । ସେଇ ଅମୂଲ୍ୟ ସ୍ମୃତିର ନିଦର୍ଶନ ସ୍ୱରୂପ ଆପଣଙ୍କୁ ମୋର 'ସମାଲୋଚନା ଭାରତୀ' ପୁସ୍ତକଟି ଉତ୍ସର୍ଗ କରୁଅଛି ।

ସ୍ନେହାନୁବଦ୍ଧ

**ବାଉରୀବନ୍ଧୁ**

ଅକ୍ଷୟତୃତୀୟା, ୧୯୯୧

# ସୂଚୀ





# ଉତ୍କଳହିତୈଷୀ କମିଶନର

# ସାର୍ ହେନେରୀ ରିକେଟସ୍

ଊନବିଂଶ ଶତକରେ ଯେଉଁ କେତେଜଣ ବ୍ରିଟିଶ ପ୍ରଶାସକ, ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ଉନ୍ନତି କଳ୍ପେ ନିଜକୁ ଉତ୍ସର୍ଗ କରିଥିଲେ, ସେମାନଙ୍କ ମଧ୍ୟରେ ସାର୍ ହେନେରୀ ରିକେଟସ୍‌ଙ୍କ ନାମ ସର୍ବାଗ୍ରେ ସ୍ମରଣୀୟ । ତତ୍କାଳରେ ଓଡ଼ିଶାର ବହୁମୁଖୀ ବିକାଶ ନିମନ୍ତେ ତାଙ୍କର ଉଦ୍ୟମ ଥିଲା ବାସ୍ତବରେ ସର୍ବଜନାଦୃତ । ଜଣେ ପଦସ୍ଥ କର୍ମଚାରୀ ଭାବରେ ସେ ଏଠାକୁ ସୁଦୂର ବିଲାତରୁ ଆସିଥିଲେ ସୁଦ୍ଧା, ସେ ଥିଲେ ଓଡ଼ିଆମାନଙ୍କ ଚିର ଶୁଭାନୁଧ୍ୟାୟୀ ବନ୍ଧୁ । ଓଡ଼ିଆମାନଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଥିଲା ଅପରିସୀମ । ତରୁଣ ବୟସରେ ଓଡ଼ିଶା ଭୂମିରେ ତାଙ୍କର ପ୍ରାଣପ୍ରିୟା ପତ୍ନୀ ଓ ଶିଶୁକନ୍ୟାଙ୍କୁ ହରାଇଥିଲେ ମଧ୍ୟ ସେ ନିଷ୍ଠା ଓ ଧୈର୍ଯ୍ୟର ସହିତ ଓଡ଼ିଆମାନଙ୍କ ସେବା କରିଥିଲେ । ତାଙ୍କର ଓଡ଼ିଆ ପ୍ରୀତି ଓ ନିରଳସ ସେବାର ନିଦର୍ଶନ ସ୍ୱରୂପ ଏକ ପ୍ରସ୍ତରର ସ୍ମୃତିସ୍ତମ୍ଭ ବାଲେଶ୍ୱରଠାରେ ଅଦ୍ୟାବଧି ବିଦ୍ୟମାନ ।

ସାର୍ ହେନେରୀ ରିକେଟସ୍ ଲଣ୍ଡନଠାରେ ୧୮୦୫ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ସେ ଜଣେ ସିଭିଲ୍ ସରଭେଣ୍ଟ୍ ଭାବେ ୧୮୨୭ ମସିହାରେ ପ୍ରଥମ କରି ବିଲାତରୁ ଭାରତକୁ ଆସିଥିଲେ । ସେହିବର୍ଷ କଟକର ମାଜିଷ୍ଟ୍ରେଟ୍ ଭାବରେ ସେ ଯୋଗ ଦେଇଥିଲେ । କଟକଠାରେ ସେ ତାଙ୍କର କୃତିତ୍ୱ ପ୍ରଦର୍ଶନ କରିବାର ସ୍ୱଳ୍ପ ସମୟ ମଧ୍ୟରେ ବାଲେଶ୍ୱରକୁ ୧୮୨୮ ମସିହାରେ ହୋଇଥିଲେ ସ୍ଥାନାନ୍ତରିତ । ସେହିବର୍ଷ ପ୍ରଶାସନିକ ସୁବିଧା ଦୃଷ୍ଟିରୁ ବୃହତ୍ତର କଟକ ଜିଲ୍ଲାକୁ ଉତ୍ତର, ଦକ୍ଷିଣ ଓ କେନ୍ଦ୍ରୀୟ ଏହିପରି ତିନିଭାଗରେ ବିଭକ୍ତ କରାଯାଇଥିଲା । ଅନୁନ୍ନତ କେତୋଟି ଗଡ଼ଜାତ ଅଞ୍ଚଳକୁ ନେଇ ଉତ୍ତରାଞ୍ଚଳ ବାଲେଶ୍ୱର ଜିଲ୍ଲା ଭାବରେ ଥିଲା ସୁପରିଚିତ । ଏହାର ସୀମା ସେ ସମୟରେ ମେଦିନୀପୁର ପର୍ଯ୍ୟନ୍ତ ଥିଲା ସୁବିସ୍ତୃତ । ଏ ଅଞ୍ଚଳରେ ସବୁବେଳେ ବନ୍ୟା, ବାତ୍ୟା, ମରୁଡ଼ି ପ୍ରଭୃତି ପ୍ରାକୃତିକ ଦୁର୍ବିପାକ ଲାଗି ରହୁଥିଲା । ୧୮୩୧ ମସିହାରେ ଏକ ସାମୁଦ୍ରିକ ଝଡ଼ ଏ ଅଞ୍ଚଳର

ବ୍ୟାପକ କ୍ଷତି କରିଥିଲା । ସାମୁଦ୍ରିକ ଝଡ଼ର ପ୍ରକୋପରେ ଏକ ବିସ୍ତୀର୍ଣ୍ଣ ଅଞ୍ଚଳ ଲୁଣା ପାଣିରେ ପ୍ଲାବିତ ହୋଇ ଧନ ଜୀବନ ନଷ୍ଟ କରିଥିଲା । ସେ ସମୟରେ ହେନେରୀ ରିକେଟସ୍ ଦେବଦୂତ ପରି ଝଡ଼ପ୍ରପୀଡ଼ିତ ଲୋକମାନଙ୍କ ନିକଟକୁ ଯାଇ ସେବା କରିଥିଲେ । ସେ ବାଲେଶ୍ୱରର ବଡ଼ ବଜାରରୁ ନନ୍ଦକିଶୋର ମଣ୍ଡଳ ନାମକ ଜଣେ ବ୍ୟବସାୟୀଙ୍କଠାରୁ କୋଡ଼ିଏ ହଜାର ଟଙ୍କା ଋଣ ଗ୍ରହଣ କରି ଧାରସୂତ୍ରରେ ନେଇ, ବିପନ୍ନ ଲୋକମାନଙ୍କୁ ବାଣ୍ଟି ଦେଇଥିଲେ । କମିଶନର ଜର୍ଜ ଷ୍ଟକ୍‌ୱେଲ୍‌ଙ୍କୁ ଏହି ଝଡ଼ ସମ୍ପର୍କରେ ସୂଚନା ଦେଇ ହେନେରୀ ରିକେଟସ୍ ବିପୁଳ ସାହାଯ୍ୟ ବ୍ୟବସ୍ଥା କରିବାକୁ ଅନୁରୋଧ କରିଥିଲେ । ରିକେଟସ୍ ୧୮୩୧ର ଝଡ଼ ସମ୍ପର୍କରେ ସୂଚନାରେ ଲେଖିଥିଲେ—'A more extensive calamity seldom visited the earth.'' (୧) ଝଡ଼ କାର୍ଯ୍ୟରେ ଲୋକମାନଙ୍କ ସେବାରେ ନିଯୁକ୍ତ ଏହି ଯୁବ ମାଜିଷ୍ଟ୍ରେଟ୍ ବାଲେଶ୍ୱରବାସୀଙ୍କଠାରେ ଥିଲେ ଅତି ଆଦରଣୀୟ ।

ହେନେରୀ ରିକେଟସ୍ ଓଡ଼ିଆମାନଙ୍କ ଆର୍ଥନୀତିକ, ସାମାଜିକ, ଶିକ୍ଷାଗତ ଓ ସାଂସ୍କୃତିକ ବିକାଶ ପାଇଁ ଥିଲେ ଅତ୍ୟନ୍ତ ଯତ୍ନଶୀଳ । ଯେଉଁ ସମୟରେ ଓଡ଼ିଆମାନେ ଅନଗ୍ରସର ଅବସ୍ଥାରେ କୁସଂସ୍କାର ଭିତରେ କାଳାତିପାତ କରୁଥିଲେ, ସେ ସମୟରେ ରିକେଟସ୍ ସାହେବ ଓଡ଼ିଆମାନଙ୍କୁ ଦେଇଥିଲେ ନୂତନ ମନୋବଳ । ସେ ଦେଶୀୟ ପାଠଶାଳାଠାରୁ ଆରମ୍ଭ କରି ମିଶନ ସ୍କୁଲମାନ ପ୍ରତିଷ୍ଠା କରିବା ସକାଶେ ବାରମ୍ବାର ବଙ୍ଗ ସରକାରଙ୍କୁ ପତ୍ର ଲେଖୁଥିଲେ । ତାଙ୍କର ବିଶ୍ୱାସ ଥିଲା, ଓଡ଼ିଆମାନେ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟରେ ଅଂଶ ଗ୍ରହଣ କରିବା ପାଇଁ ଶିକ୍ଷିତ ହେବା ଆବଶ୍ୟକ । ତାଙ୍କ ଉଦ୍ୟମରେ ଓଡ଼ିଆମାନେ ରାଜକାର୍ଯ୍ୟରେ ନିଯୁକ୍ତ ହୋଇ ପାରିଥିଲେ । ଏ ସମ୍ପର୍କରେ ସେ କହିଥିଲେ—''When I was appointed Magistrate and Collector of Balasore in 1828, I found all the native officers Bengalees. At the end of eight years, I left nearly all officers filled by Oriahs and right faithfully they served me-'' (୨)

---

(୧) H. Ricketts to G. Stockwell, Commissioner, 23rd April 1831, Page 40 Board of Revenue Archives

(୨) From H. Ricketts to Sadar Board of Revenue, Fort William, Bengal, Letter No-2955, Dated 7th Dec. 1837.

ବିଶେଷତଃ ଗଡ଼ଜାତ ଅଞ୍ଚଳରେ ପ୍ରଜାମାନଙ୍କ ଉପରେ ହେଉଥିବା ଅତ୍ୟାଚାରକୁ ସେ ଅନେକାଂଶରେ ପ୍ରତିରୋଧ କରିବା ସହିତ ସେଠାରେ ସେମାନଙ୍କ ଶିକ୍ଷାଗତ ବିକାଶ ଉପରେ ଗୁରୁତ୍ୱ ଦେଉଥିଲେ ।

ହେନେରି ରିକେଟସ୍ ଓଡ଼ିଆ ଲିଖନ ପ୍ରଣାଳୀରେ କେତେକ ସଂସ୍କାର ଆନୟନ କରିଥିଲେ । ଊନବିଂଶ ଶତିକର ଆଦ୍ୟ ପାଦରେ ଯେଉଁ ଓଡ଼ିଆ ଗଦ୍ୟ ଲେଖା ଯାଉଥିଲା, ସେଥିରେ ପୂର୍ଣ୍ଣଚ୍ଛେଦ, ବିରାମଚିହ୍ନ, କମା ପ୍ରଭୃତି ଆଦୌ ରହୁନଥିଲା । ପୁଣି ସେତେବେଳକୁ ପାର୍ଶୀ ଭାଷା କଚେରୀର ଭାଷା ଭାବରେ ଥିଲା ପ୍ରଚଳିତ । ୧୮୩୫ ମସିହାରେ ପାର୍ଶୀ ଭାଷା କଚେରୀ ଭାଷା ରହିବା ଉଚିତ କି ନୁହେଁ ଏ ନେଇ ଏକ ମତାମତ ବଙ୍ଗ ସରକାର ବିଭିନ୍ନ ପ୍ରାଦେଶିକ ଶାସକଙ୍କଠାରୁ ନେଇଥିଲେ । ଓଡ଼ିଶାରେ ଓଡ଼ିଆକୁ କଚେରୀ ଭାଷା ଭାବରେ ୧୮୩୭ ମସିହାରେ ପ୍ରଚଳନ କରିବାପାଇଁ ଆଦେଶ ଦିଆ ଯାଇଥିଲା । କଚେରୀ ଭାଷା ରୂପେ ପ୍ରଚଳନ ହେବା କ୍ଷେତ୍ରରେ ଓଡ଼ିଆ ଲିଖନ ପ୍ରଣାଳୀରେ ଯେଉଁ ପ୍ରତିବନ୍ଧକ ରହିଥିଲା, ତାକୁ ଦୂର କରିବା ପାଇଁ ହେନେରି ରିକେଟସ୍ ତଦାନୀନ୍ତନ ସମୟରେ ନେତୃତ୍ୱ ନେଇଥିଲେ । ଲିଖିତ ଓଡ଼ିଆ ଭାଷାର ସରଳୀକରଣ ପାଇଁ ତାଙ୍କର ଦିଗ୍‌ଦର୍ଶନ ଥିଲା ଯୁଗୋପଯୋଗୀ । ଭାଷାର ସହଜ ଅବବୋଧକୁ ଦୃଷ୍ଟିରେ ରଖି ଓଡ଼ିଆ ଭାଷାରେ ସେ ସଂସ୍କାର ଆନୟନ କରିଥିଲେ । ବାକ୍ୟ ମଧ୍ୟରେ ବିରାମଚିହ୍ନ ଦେବା, ଶବ୍ଦଗୁଡ଼ିକୁ ପୃଥକ୍ କରି ସଜାଇ ଲେଖିବା ପ୍ରଭୃତି ତାଙ୍କରି ଚେଷ୍ଟାରେ ସମ୍ଭବ ହୋଇଥିଲା । ଏ ସମ୍ପର୍କରେ ସେ ପୁରୀର ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ୍‌ଙ୍କୁ ଯେଉଁ ପତ୍ର ଲେଖିଥିଲେ, ତାହା ଥିଲା ଏହିପରି—"Punctuation would be an immense improvement and sentences which would be perfectly unintelligible without correct punctuation are by it rendered easily comprehensible and clean At first, of course, mistakes would be made, but the advantage which will allow me by dividing the words, encourage me to attempt other improvements.

Now is the time for changes of this sort, and I shall be obliged by any suggestions you will offer for improving the long neglected language, the restoration of which in all matters of recourse has

been directed." ( ୩ ) କୋର୍ଟ କଚେରୀରେ ବ୍ୟବହୃତ ହେଉଥିବା ଓଡ଼ିଆ ଭାଷାରେ ବିରାମଚିହ୍ନ ପ୍ରଭୃତି ନଥିବାରୁ ଅନେକ ସମୟରେ ଗୋଟିଏ ଗୋଟିଏ ପଦ ବିଭିନ୍ନ ଅର୍ଥ ପ୍ରକାଶ କରୁଥିଲା । ଜମିଜମା ବନ୍ଦୋବସ୍ତ କାର୍ଯ୍ୟ, ବିଚାରାଳୟ ଓ ସାଧାରଣ କ୍ଷେତ୍ରରେ ଏ ଧରଣର ଲିଖନ ପ୍ରଣାଳୀ ଯାବତୀୟ ବିଭ୍ରାଟ ସୃଷ୍ଟିରେ ହୋଇଥିଲା ସହାୟକ । ଓଡ଼ିଆ ଭାଷାକୁ ଅର୍ଥପୂର୍ଣ୍ଣ ଓ ସହଜ କରିବା ପାଇଁ ହେନେରୀ ରିକେଟସ୍ ଓଡ଼ିଆ ଭାଷାରେ କମା, ପୂର୍ଣ୍ଣଚ୍ଛେଦ ଦେଇ ଲେଖିବା ଧାରା ପ୍ରବର୍ତ୍ତନ କଲେ । ତାଙ୍କର ଓଡ଼ିଆ ଭାଷାରେ ଲିଖନ ପ୍ରଣାଳୀରେ ସଂସ୍କାରର ସୁଫଳ ଆଜି ସମସ୍ତେ ଅନୁଭବ କରୁଛନ୍ତି । ସେ ସମୟରେ ଲିଖନ ପ୍ରଣାଳୀ ପରିବର୍ତ୍ତନ ନେଇ କେତେକ ପ୍ରତିବାଦ କରିଥିଲେ ମଧ୍ୟ ରିକେଟସ୍ ସାହେବ ଓଡ଼ିଆ ଭାଷାର ଭବିଷ୍ୟତ ହିତ ଦୃଷ୍ଟିରୁ ଏପରି ସେ କରୁଛନ୍ତି ବୋଲି ତାଙ୍କର କେତେକ ପତ୍ରରୁ ଅନୁମେୟ । ଏ ସମ୍ପର୍କରେ ସେ ଲେଖିଛନ୍ତି—"I am aware that some troubles will be occasioned by these innovations, but much future advantage will be gained. The Oriahs instead of being prejudiced against changes such as these, the advantages of which they see, eagerly welcome them and will make good progress directed." ( ୪ ) ପ୍ରକୃତରେ ତାଙ୍କର ଏହି ଚିନ୍ତାଧାରା ପରବର୍ତ୍ତୀ ସମୟରେ ଓଡ଼ିଆ ଗଦ୍ୟ ରଚନାକୁ ମାର୍ଜିତ କରିଥିଲା ।

ହେନେରୀ ରିକେଟସ୍ ସାହେବ ଓଡ଼ିଶାରେ କଚେରିଆ ଗଦ୍ୟଭାଷାର ମୁଖ୍ୟ ପ୍ରବର୍ତ୍ତକ ଫୋର୍ଟ ଉଇଲିୟମ୍‌ରୁ ସଦର ବୋର୍ଡ଼ ଅଫ୍ ରେଭେନ୍ୟୁ ସଚିବ ସି. ଇ. ଟ୍ରିବିଲିୟମ୍ ତତ୍କାଳରେ ଦେଶୀୟ ଭାଷାରେ କଚେରୀକାର୍ଯ୍ୟ କରିବା ପାଇଁ ତା ୧୧ । ୭ । ୧୮୩୭ ରିଖରେ ଏକ ନିର୍ଦ୍ଦେଶନାମା କମିଶନରଙ୍କୁ ପଠାଇଥିଲେ । ବଙ୍ଗ, ବିହାର ଓ ଓଡ଼ିଶାରେ ଏହି ନିୟମ ପାଳନ କରିବା ପାଇଁ ତାଙ୍କର ନିର୍ଦ୍ଦେଶନାମାରେ ସ୍ପଷ୍ଟ

---

( ୩ ) Copies of Letters issud from Jan. 1838 to June 1838, Letter No. 685. 27. 3. 1838 from H. Ricketts to Magistrate of Pooree.

( ୪ ) H. Ricketts to the Collector of Cuttack, Pooree and Bolasore Letter No. 1060 Dated 14. 4. 1838.

ଉଲ୍ଲେଖ ଥିଲା । କମିଶନରଙ୍କ ଉଦ୍ୟମରେ ଓଡ଼ିଶାର ସଦର ମହକୁମା ଓ କଚେରୀରେ ଓଡ଼ିଆ ଭାଷାରେ ସରକାରୀ କାର୍ଯ୍ୟ ଚାଲିଥିଲା । ସେ ପ୍ରଥମ କରି କଚେରୀରେ ବିଭିନ୍ନ ଦଲିଲ, ଦାସ୍ତାବିଜ୍ ପ୍ରଭୃତିର ନମୁନା ଓଡ଼ିଆରେ ପ୍ରସ୍ତୁତ କରାଇଥିଲେ । ଏସବୁ କଚେରିଆ ଗଦ୍ୟଭାଷା ସାହିତ୍ୟିକ ମର୍ଯ୍ୟାଦା ବର୍ଜିତ ହେଲେ ସୁଦ୍ଧା, ଓଡ଼ିଆ ଗଦ୍ୟର ସ୍ୱାତନ୍ତ୍ର୍ୟ ଆଲୋଚନା ପରିପ୍ରେକ୍ଷୀରେ ବେଶ୍ ଉପଯୋଗୀ ମନେହୁଏ । ସେ ସମୟରେ ଏହି ଗଦ୍ୟରେ ଚଡ଼ଜାତରେ ନିଯୁକ୍ତ ଓଡ଼ିଆ ରାଜ-କର୍ମଚାରୀମାନଙ୍କୁ ତାଲିମ ଦେଇ ସେ ବନ୍ଦୋବସ୍ତ କାର୍ଯ୍ୟ କରିଥିଲେ । ଓଡ଼ିଶାରେ ବନ୍ଦୋବସ୍ତ କାର୍ଯ୍ୟର ଶୁଭାରମ୍ଭ ତାଙ୍କରି ଦ୍ୱାରା ହୋଇଥିଲା । ୧୮୩୭ ମସିହାରେ ଯେତେବେଳେ ଏହି କାର୍ଯ୍ୟ ଆରମ୍ଭ ହେଲା, ସେତେବେଳେ ସେ ଏହାର ନେତୃତ୍ୱ ନେଇଥିଲେ । ତାଙ୍କର ନେତୃତ୍ୱରେ ବୈଜ୍ଞାନିକ ସ୍ତରରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ସର୍ବେକ୍ଷଣ କାର୍ଯ୍ୟ ଚାଲିଥିଲା । ଊନବିଂଶ ଶତକରେ ଯେଉଁ ବୃହତ୍ତର ଓଡ଼ିଆ ଭାଷାଭାଷୀ ଅଞ୍ଚଳର ସୀମା ଧାର୍ଯ୍ୟ କରାଯାଇଥିଲା, ତାହା ସେ କମିଶନରଙ୍କ ସର୍ବେକ୍ଷଣ ଦ୍ୱାରା ସମ୍ଭବ ହୋଇ ପାରିଥିଲା, ଏଥିରେ ସନ୍ଦେହ ନାହିଁ । ଯେଉଁ ଓଡ଼ିଆ ପଦସ୍ଥ କର୍ମଚାରୀମାନେ ହେନେରୀ ରିକେଟସ୍‌ଙ୍କୁ ବନ୍ଦୋବସ୍ତ କାର୍ଯ୍ୟରେ ସାହାଯ୍ୟ କରିଥିଲେ, ସେମାନଙ୍କ ମଧ୍ୟରେ ଜଗମୋହନ ବସୁ ଚୂଡ଼ାମଣି, ରାମପ୍ରସାଦ ବସୁ, ନୀଳମଣି ବ୍ରହ୍ମା, ବ୍ରଜସୁନ୍ଦର ରାୟ ଏବଂ ନରସିଂହ ଚରଣ ଦାସ ପ୍ରମୁଖଙ୍କ ନାମ ଉଲ୍ଲେଖଯୋଗ୍ୟ । ସେ ଓଡ଼ିଆ କର୍ମଚାରୀମାନଙ୍କ ବନ୍ଦୋବସ୍ତ କାର୍ଯ୍ୟ ପରିଚାଳନାରେ କରିଥିବା ସହଯୋଗକୁ ପ୍ରଶଂସା କରିବା ସହିତ, ସେମାନଙ୍କ ନିଷ୍ଠା, ସାଧୁତା, ଚରିତ୍ରବତ୍ତାକୁ ମଧ୍ୟ ଉଚ୍ଚ ଦୃଷ୍ଟିରେ ଦେଖିଥିଲେ । ଏ ସଂପର୍କରେ ସେ ତାଙ୍କର ଅବସରକାଳୀନ ଏକ ଲେଖାରେ ଲେଖିଛନ୍ତି "All the details of the settlement of Orissa were conducted by the Oriya officers and it is not too much to say that their excellent conduct, the efficiency and honesty which trust and sympathy produced had beneficial results." ( ୫ ) ତାଙ୍କର ଏଇ ମନ୍ତବ୍ୟରୁ ସେ ଓଡ଼ିଆମାନଙ୍କ ପ୍ରତି କେତେଦୂର ଶ୍ରଦ୍ଧାଶୀଳ ଥିଲେ ଅନୁମାନ କରାଯାଇପାରେ ।

---

( ୫ ) H. Ricketts to the Editor, Calcutta Review -1868, Page-235.

କମିଶନର ସାହେବ ଓଡ଼ିଶାର ସାଂସ୍କୃତିକ ପୀଠମାନଙ୍କର ସଂରକ୍ଷଣ ପାଇଁ ବହୁବିଧ ଉଦ୍ୟମ କରିଥିଲେ । ଯାଜପୁରର ତ୍ରିଲୋଚନେଶ୍ୱର ମନ୍ଦିର, ବ୍ରହ୍ମକୁଣ୍ଡ ପ୍ରଭୃତି କେତେକ କୀର୍ତ୍ତିର ପୁନରୁଦ୍ଧାର ସେ କରିଥିଲେ । ସେ ଦେଶୀୟ ରାଜାମାନଙ୍କୁ ଓଡ଼ିଶାର ମଠ, ମନ୍ଦିର ପ୍ରଭୃତି ସଂରକ୍ଷଣ କରିବାପାଇଁ ବାରମ୍ବାର ଅନୁରୋଧପତ୍ରମାନ ପଠାଉଥିଲେ । ସେ ପୁରୀର ରାଜାଙ୍କ ସହାୟତାରେ କୋଣାର୍କର ପ୍ରସିଦ୍ଧ ସୂର୍ଯ୍ୟ ମନ୍ଦିରକୁ ସମୁଦ୍ରର ଲୁଣି ହାଓ୍ୱାରୁ ରକ୍ଷା କରିବା ପାଇଁ କେତେଗୁଡ଼ିଏ ପଦକ୍ଷେପ ନେଇଥିଲେ । ତାଙ୍କର ଏହି କାର୍ଯ୍ୟ ସଂପର୍କରେ ସୂଚନା ଦେଇ E. Smeaton ଲେଖିଥିଲେ—"The people of Orissa will remain ever grateful to Sir Henery Ricketts for saving the famous sun temple of Konark from destruction by the Raja of Pooree." ସେ ଓଡ଼ିଶାର ପ୍ରାଚୀନ ମସ୍‌ଜିଦ୍‌ମାନଙ୍କର ସୁରକ୍ଷାପାଇଁ ମଧ୍ୟ କେତେକ ଚେଷ୍ଟା କରିଥିଲେ । ତାଙ୍କର ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଓଡ଼ିଶାର ମଠ ଓ ମନ୍ଦିରଗୁଡ଼ିକୁ ସୁରକ୍ଷିତ କରି ରଖିବା ପାଇଁ ସବୁବେଳେ ଆନ୍ତରିକତା ଥିଲା । ସେ ଓଡ଼ିଶାରେ ଦୀର୍ଘ ବାରବର୍ଷ କାର୍ଯ୍ୟ କରିବାପରେ ଜାନୁୟାରୀ ଦୁଇ ତାରିଖ ୧୮୪୦ ମସିହାରେ ଏଠାରୁ ବିଦାୟ ନେଲେ । ଓଡ଼ିଶାରୁ ଯିବାପରେ ମଧ୍ୟ ସେ ଓଡ଼ିଶାର ବିଭିନ୍ନ ଉନ୍ନୟନ କାର୍ଯ୍ୟରେ ନିଜକୁ ବଙ୍ଗ, ବିହାର, ଓଡ଼ିଶାର ଜଣେ ପଦସ୍ଥ କର୍ମଚାରୀ ଭାବେ ସାମିଲ କରିଥିଲେ । ସେ ବୋର୍ଡ଼ ଅଫ୍ ରେଭେନ୍ୟୁର ମେମ୍ବର ଭାବରେ ଫୋର୍ଟ୍ ଉଇଲିୟମ୍‌ରେ ଅବସ୍ଥାପିତ ହେବାବେଳେ ଓଡ଼ିଶାର ଦେଶୀୟ ରାଜାଙ୍କ ମଙ୍ଗଳ ନିମନ୍ତେ ଅନେକ ସୁବିଧା କରିଥିଲେ ।

ସାର୍ ହେନେରୀ ରିକେଟସ୍ ହିନ୍ଦୁସ୍ଥାନୀ ଭାଷାକୁ ବିଶେଷ ଗୁରୁତ୍ୱ ଦେଉଥିଲେ । ଓଡ଼ିଶାରେ ଓଡ଼ିଆ ଭାଷା ସହ ହିନ୍ଦୁସ୍ଥାନୀ ଭାଷାର ପ୍ରଚଳନ ହେଉ, ସେ ଏହା ଚାହୁଁଥିଲେ । ଅବଶ୍ୟ ତାଙ୍କର ହିନ୍ଦୁସ୍ଥାନୀ ଭାଷା ସପକ୍ଷବାଦୀ ଚିନ୍ତାଧାରାକୁ ଅନେକ ଭଲ ଦୃଷ୍ଟିରେ ଦେଖୁ ନ ଥିଲେ । ତାଙ୍କର ମତ ଥିଲା ଯେ, ହିନ୍ଦୁସ୍ଥାନୀ ଭାଷା ଦ୍ୱାରା ହିନ୍ଦୁ, ମୁସଲମାନମାନଙ୍କ ମଧ୍ୟରେ ଭାବଗତ ଐକ୍ୟ ପ୍ରତିଷ୍ଠାର ମାର୍ଗ ସୁଗମ ହୋଇପାରିବ । ଓଡ଼ିଶା ଭୂମିରେ ସାହେବଙ୍କର ଏହି ଚିନ୍ତାଧାରା ସଫଳୀକୃତ ହୋଇ ପାରିନଥିଲା ; କିନ୍ତୁ ତାଙ୍କର ସେହି ଦିନର ସ୍ୱପ୍ନ ଓଡ଼ିଶା କାହିଁକି, ଆଜି ସମଗ୍ର ଭାରତବର୍ଷରେ ଯଥାର୍ଥ ରୂପରେଖ ନେଇଛି । ଏଥିରୁ ତାଙ୍କର ଦୂରଦୃଷ୍ଟି ଓ ଉଚ୍ଚ ଚିନ୍ତାଧାରାର ପରିଚୟ ମିଳେ ।

ସାର୍ ହେନେରୀ ରିକେଟସ୍ ଜଣେ ସାଧୁ, ସରଳ ପ୍ରକୃତିର ପ୍ରଶାସକ ଥିଲେ । ସେ ମର୍ମେ ମର୍ମେ ବୁଝିଥିଲେ ଯେ ଭଲ ଶାସକ ହେବାକୁ ହେଲେ ପ୍ରଥମେ ଜନସାଧାରଣଙ୍କ ସହିତ ଆତ୍ମୀୟ ଭାବରେ ବାନ୍ଧି ହେବା ଅପରିହାର୍ଯ୍ୟ । ପୁଣି ଜନସାଧାରଣଙ୍କ ଆପତ୍ତି ଅଭିଯୋଗକୁ ଧୈର୍ଯ୍ୟ ସହକାରେ ଶୁଣିବା ଶାସକର ସର୍ବାଦୌ ଉଚିତ । ସେ କହନ୍ତି—"To be really efficient, indeed not to be a clog in the machine, there should not be a letter unanswered." ଏ ଧରଣର ମନୋବୃତ୍ତି ନେଇ ସେ ଓଡ଼ିଶାରେ ତାଙ୍କର ପ୍ରଶାସନିକ ଦକ୍ଷତା ଦେଖାଇଥିଲେ । ନାନା ଘାତ-ପ୍ରତିଘାତ ଭିତରେ ସେ ଭାରତବାସୀଙ୍କର ଦୀର୍ଘ ଅଷ୍ଟତ୍ରିଂଶ ବର୍ଷ ସେବା କରିଥିଲେ । ଏହି ସମୟ ମଧ୍ୟରୁ ଦୀର୍ଘ ବାରବର୍ଷ ଓଡ଼ିଶାବାସୀଙ୍କ ସେବା କରିବାର ସୁଯୋଗ ସେ ପାଇଥିଲେ । ତାଙ୍କ ସମୟରେ ଓଡ଼ିଶାର ସାଂସ୍କୃତିକ, ଆର୍ଥିକ ଓ ସାମାଜିକ ଜୀବନରେ ଏକ ନବ ଜାଗରଣ ଦେଖା ଦେଇଥିଲା କହିଲେ ବହୁଭାଷଣ ହେବ ନାହିଁ ।

ସାର୍ ହେନେରୀ ରିକେଟସ୍ ଜଣେ ଦକ୍ଷ ପ୍ରଶାସକ ସତ୍ୟ; କିନ୍ତୁ ସେ ଥିଲେ ଆଜୀବନ ଦୁଃଖୀ । ଜୀବନର ତରୁଣ ବୟସରେ ପତ୍ନୀ ବିୟୋଗ ଓ କନ୍ୟା ବିୟୋଗ ଫଳରେ ତାଙ୍କର ଜୀବନ ଏକ ଭିନ୍ନ ମୋଡ଼ ନେଇଥିଲା । ୧୮୩୦ ମସିହାରେ ମାତ୍ର ଛବିଶ ବର୍ଷ ବୟସରେ ସ୍ତ୍ରୀଙ୍କୁ ହରାଇ ଆଉ ବିବାହ ନକରି ଆଜୀବନ ଜନସେବାରେ ସେ ନିଜକୁ ନିୟୋଜିତ କରିଥିଲେ । ତାଙ୍କର ସେବା, ତ୍ୟାଗ ଓ ମହାନୁଭବତାର ସ୍ମୃତିକୁ ଏବେ ମଧ୍ୟ ଓଡ଼ିଶାବାସୀ ବଞ୍ଚାଇ ରଖିଛନ୍ତି । ଏହି ଓଡ଼ିଆପ୍ରାଣ କମିଶନରଙ୍କ ମୃତ୍ୟୁପରେ ଏକ ସ୍ମୃତିସ୍ତମ୍ଭ ବାଲେଶ୍ୱରର ବାରବାଟୀଠାରେ ଏହାଙ୍କର ମହିମା ଆଜି ପର୍ଯ୍ୟନ୍ତ ବି ଗାନ କରୁଛି । ସେହି ସ୍ମୃତିସ୍ତମ୍ଭରେ ତାଙ୍କର ମହନୀୟ କୀର୍ତ୍ତି ଏହିପରି ଉତ୍କୀର୍ଣ୍ଣ—

Sir Henry Ricketts having served Twelve years in Orissa and Thirty years in India, Died in England on the 25th February 1886, Aged nearly 84.

He never forgot Balasore and the Ooreahs.

ପ୍ରକୃତରେ ହେନେରୀ ରିକେଟସ୍ ଥିଲେ ଜଣେ କର୍ମବୀର । ଓଡ଼ିଆ ଜାତି ପାଇଁ ଉତ୍କଳଗୌରବ ମଧୁସୂଦନ, ଫକୀରମୋହନ ସେନାପତି, ଉତ୍କଳମଣି

ଗୋପବନ୍ଧୁ ପ୍ରଭୃତି ଯେପରି ତ୍ୟାଗର ଦୃଷ୍ଟାନ୍ତ ରଖି ଯାଇଛନ୍ତି, ସେଇଭଳି ତ୍ୟାଗର ମୂର୍ତ୍ତି ପ୍ରତୀକ ହୋଇଛନ୍ତି ବ୍ରିଟିଶ ପ୍ରଶାସକ ସାର୍ ହେନେରୀ ରିକେଟସ୍ । ତାଙ୍କର ଓଡ଼ିଆ ପ୍ରୀତି ଅତୁଳନୀୟ । ଊନବିଂଶ ଶତକର ଏହି ନିରଳସ କର୍ମଯୋଗୀ ରିକେଟସ୍ ସାହେବଙ୍କ ପରି ଆଜିର ପ୍ରଶାସକମାନେ ଓଡ଼ିଶାର ସେବାରେ ନିଜକୁ ନିୟୋଜିତ କରି ପାରିଲେ, ଓଡ଼ିଶାର ଭାଗ୍ୟାକାଶରେ ପ୍ରଗତିର ଏକ ନୂତନ ରବି ଉଦୟ ହୋଇପାରିବ । ରାଜନୀତିକ ନେତାମାନଙ୍କ ତୁଳନାରେ ପଦସ୍ଥ କର୍ମଚାରୀମାନଙ୍କର ଯେ ଅଧିକ ଭାବରେ ରାଜବୃତ୍ତିରେ ଥାଇ ଜନସେବା କରିବାର ସୁଯୋଗ ରହିଛି, ଏହାର ଦୃଷ୍ଟାନ୍ତ ଉତ୍କଳ ହିତୈଷୀ କମିଶନର୍ ସାର୍ ହେନେରୀ ରିକେଟସ୍ ସାହେବ କର୍ମ-କୃତିତ୍ୱରେ ଏ ଜାତିକୁ ଦେଖାଇ ଯାଇଛନ୍ତି । ସେଥିପାଇଁ ତାଙ୍କ ମୃତ୍ୟୁର ଶତାଧିକ ବର୍ଷ ବ୍ୟବଧାନ ପରେ ସୁଦ୍ଧା ସେ ଆମ ସ୍ମୃତିରେ ସଂଜୀବିତ । ତାଙ୍କର ଶୁଭ୍ରଯଶ ଉତ୍କଳ ଭୂମିରେ କେବେହେଲେ ନିଷ୍ପ୍ରଭ ହେବନାହିଁ ।



# ଆଧୁନିକତା ଓ କବି ଗଙ୍ଗାଧର

'ଆଧୁନିକତା' କୌଣସି ଏକ ନିର୍ଦ୍ଦିଷ୍ଟ ଅର୍ଥ ବହନ ନକରି ଥାଇଲେ ସୁଦ୍ଧା, ଏହା ହେଉଛି ଲେଖକଙ୍କର ମର୍ଯ୍ୟାଦାର ମାପକାଠି । ଯଦି କୌଣସି କବି ତା'ର ଜୀବିତ କାଳରେ ହେଉ ବା ମୃତ୍ୟୁ ପରେ ହେଉ ଆଧୁନିକ ପଦବାଚ୍ୟ ହୁଏ, ତା' ହେଲେ ତା'ର କବିଜୀବନ ହୁଏ ସାର୍ଥକ । ସମସାମୟିକ ସମୟର ପ୍ରାଣ-ସ୍ପନ୍ଦନ, ରୁଚିବୋଧ ଭିତରେ ସାଧାରଣତଃ ଆଧୁନିକତା ଆତ୍ମପ୍ରକାଶ କରେ । ଏ ହିସାବରେ 'ସମକାଳୀନ' ଅର୍ଥରେ ଏହା ମଧ୍ୟ ବ୍ୟବହୃତ । 'ସମକାଳୀନ' ଶବ୍ଦର ଉଚ୍ଚାରଣ ମାତ୍ରେ ସମୟର ଗୁରୁତ୍ୱ ବୁଝାପଡ଼େ । ଅର୍ଥାତ୍, ଏହା ହେଉଛି ସମସାମୟିକ ରୁଚିବୋଧକୁ ନେଇ ଲେଖକର ମନ ଓ ମନନର ମୁଦ୍ରାଙ୍କ । ଏଠାରେ ଏକ ସ୍ୱାଭାବିକ ପ୍ରଶ୍ନ ଉଠେ, କେବଳ କ'ଣ ସମୟର ଭାବପ୍ରବାହ ଆଧୁନିକତାର ମାପକାଠି ? ଅତୀତର ଅନେକ ଲେଖାରେ ମଧ୍ୟ ଆଧୁନିକ ସମୟର ପ୍ରାଣସ୍ପନ୍ଦନ ପ୍ରବାହିତ । ସମସାମୟିକ ରୁଚିବୋଧ ଓ ଚିନ୍ତାଧାରା ସହିତ ଅଭିନ୍ନ ଭାବରେ ଅନେକ ପ୍ରାଚୀନ ଲେଖାର ସଂପର୍କ ରହିଛି କହିଲେ ଅଯଥାର୍ଥ ହେବନାହିଁ । ତେଣୁ ସର୍ବକାଳୀନ ଜୀବନବୋଧକୁ ପ୍ରକାଶ କରିବା ଯେପରି ଆଧୁନିକତାର ଲକ୍ଷଣିକ ବୈଶିଷ୍ଟ୍ୟ, ସେହିପରି ସମସାମୟିକ ପାରିବେଶିକ ବାତାବରଣକୁ ରୂପ ଦେବାରେ ଏହାର ମହତ୍ତ୍ୱ ପ୍ରକଟିତ । ଏହି ମାନଦଣ୍ଡରେ ବିଚାର କଲେ ଅନେକ ପ୍ରାଚୀନ ଲେଖକଙ୍କ ସୃଷ୍ଟି ମଧ୍ୟ ଏବେ ସୁଦ୍ଧା ଯୁଗୋପଯୋଗୀ । ତେଣୁ ସେମାନେ ଆଧୁନିକ । ଏଠାରେ ଆଧୁନିକତାର ଏହି ସୂତ୍ରରେ କବି ଗଙ୍ଗାଧର ମେହେରଙ୍କ ପ୍ରସଙ୍ଗ ବିଚାର୍ଯ୍ୟ ।

ଯେଉଁମାନେ ଗଙ୍ଗାଧରଙ୍କୁ ସ୍ୱଳ୍ପଶିକ୍ଷିତ, ତନ୍ତୀକୁଳରେ ଜାତ—ଏହିପରି କହି ତାଙ୍କୁ ସହାନୁଭୂତି ପ୍ରଦର୍ଶନ କରନ୍ତି, ପ୍ରକୃତରେ ସେମାନେ ତାଙ୍କ ପ୍ରତିଭା ପ୍ରତି ଘୋର ଅନ୍ୟାୟ କରନ୍ତି । ସେ ଆନୁଷ୍ଠାନିକ ଭାବରେ ବିଶେଷ ଅଧ୍ୟୟନ ସ୍କୁଲ କଲେଜରେ ନକରିଥିଲେ ସୁଦ୍ଧା, ତାଙ୍କର ସଂସ୍କୃତ, ଇଂରାଜୀରେ ଯଥେଷ୍ଟ ଜ୍ଞାନ ଥିଲା । ସେ ତାଙ୍କର ପ୍ରଣୟବଲ୍ଲରୀ ମୁଖବନ୍ଧର ଆଦ୍ୟରେ ସଂସ୍କୃତର ପ୍ରସିଦ୍ଧ

କବି କାଳିଦାସ ଓ ଜର୍ମାନ କବି ଗେଟେଙ୍କୁ ସ୍ମରଣ କରିଛନ୍ତି । ସେ କାଳିଦାସଙ୍କ ସଂପର୍କରେ କବି ଗେଟେ ଯେଉଁ ମନ୍ତବ୍ୟ ଦେଇଥିଲେ ତାହାର ଉଦ୍ଧୃତି ଦେଇଛନ୍ତି —

"Wouldst thou the young years blossoms
and the fruits of its decline,
And all by which the soul is charmed
enraptured, feasted, fed ?
Wouldst thou the earth and heaven
itself in one sole name combine ?
I name thee, O Shakuntala !
and all atonce is said."

ଏଥିରୁ ଗଙ୍ଗାଧର ଭଲଭାବରେ ଇଂରାଜୀ ଜାଣିଥିବା ମନେହୁଏ । ସେ ଲାଲ ନୃପରାଜ ସିଂହଙ୍କ ଯେଉଁ ଜୀବନୀ ଗଦ୍ୟରେ ଲେଖିଛନ୍ତି, ସେଥିରେ ତତ୍କାଳୀନ କମିଶନର ମି: ରଜର୍ସ ସାହେବ ଯେଉଁ ପ୍ରଶଂସାସୂଚକ ମନ୍ତବ୍ୟ ଇଂରାଜୀରେ ଦେଇଥିଲେ ତା'ର ସୁନ୍ଦର ଓଡ଼ିଆ ଅନୁବାଦ ରହିଛି । ଏଠାରେ ମି. ରଜର୍ସ ସାହେବଙ୍କ ଇଂରାଜୀ ଓ ଗଙ୍ଗାଧରଙ୍କ ଅନୁବାଦ ତଳେ ଦିଆଯାଇଛି;

"It is my privilege to introduce to you Rai Bahadur Lal Nriparaj Singdeo, in order that you may, as the representative of this excellancy the Governor General, and of his Majesty the king of England Emperor of India, Confer on him sanad of Rai Bahadur, which title was given to him under the signature of Lord Curzon on January Ist 1900."

ଏହାର ଅନୁବାଦ ଦେଖନ୍ତୁ, "ଅଦ୍ୟ ରାୟବାହାଦୁର ଲାଲ ନୃପରାଜ ସିଂହଦେବଙ୍କୁ ଏ ଉଦ୍ଦେଶ୍ୟରେ ଆପଣଙ୍କ ନିକଟରେ ପରିଚିତ କରାଇ ଦେଉଅଛି କି ଆପଣ ତାଙ୍କୁ ମହାମାନ୍ୟ ଗଭର୍ଣ୍ଣର୍ ଜେନେରାଲ୍ ସାହେବ ବାହାଦୁରଙ୍କର ଓ ଇଂଲଣ୍ଡର ରାଜା ଓ ଭାରତ ସମ୍ରାଟଙ୍କର ପ୍ରତିନିଧି ସ୍ୱରୂପରେ ରାୟବାହାଦୁର ସନନ୍ଦ

ହେବେ, ଯେଉଁ ଉପାଧି ଲର୍ଡ଼ କର୍ଜନ ସାହେବଙ୍କ ଦ୍ୱାରା ତା ୧ ଲା ଜାନୁୟାରୀ ୧୯୦୦ରେ ସ୍ୱାକ୍ଷରିତ ହୋଇଅଛି ।” (୧) ତତ୍କାଳରେ କୌଣସି କବି ଏପରି ସୁନ୍ଦର ଅନୁବାଦ ଆନୁଷ୍ଠାନିକ ଶିକ୍ଷା ନପାଇ କରିବା ବାସ୍ତବରେ ଗଭୀର ଅଧ୍ୟବସାୟ ଓ ନିଷ୍ଠାର ବିଷୟ ବୋଲି କୁହାଯାଇପାରେ । ଗଙ୍ଗାଧର ଗେଟେଙ୍କୁ ପଢ଼ିବା, ଇଂରାଜୀରୁ ଓଡ଼ିଆ ଅନୁବାଦ କରିବା ବ୍ୟତୀତ ଇଂରାଜୀ ସାହିତ୍ୟର ଆଙ୍ଗିକ ସହିତ ଥିଲେ ସୁପରିଚିତ । ପ୍ରାଚୀନ ଢଙ୍ଗରେ ସେ ଯେପରି ରାଗ, ରାଗିଣୀ ଓ ଛାନ୍ଦକବିତା ଲେଖିଛନ୍ତି, ସେହିପରି ସେ ପାଶ୍ଚାତ୍ୟ ଆଙ୍ଗିକରେ ସନେଟ୍, ଓଡ୍, ଏଲିଜି ପ୍ରଭୃତି ରଚନା କରିଛନ୍ତି । ‘ପାପକ୍ଷୟ’, ‘ବୁଢ଼ାରକା’, ‘ବାଳ ପାଦପ’, ‘ଗୌରୀଶଙ୍କର ବା ଏଭେରେଷ୍ଟ’, ‘ସ୍ୱର୍ଗତ ଧନଞ୍ଜୟ ସିଂ’, ‘ଖଦ୍ୟୋତର ଖେଦ’, ‘କୈୟଷ୍ଟ କାଢର ଅପକର୍ମର ପରିଣାମ’, ‘ସ୍ୱର୍ଣ୍ଣ ପ୍ରଭ ଦୀପ’, ‘ପ୍ରଧାନ ପାଠ’ କବିତା ଗଙ୍ଗାଧରଙ୍କ ସନେଟଧର୍ମୀ ରଚନାର ସାର୍ଥକ ନିଦର୍ଶନ । ଗଙ୍ଗାଧର ସ୍ପେନସର୍‌ଙ୍କୁ ଅନେକାଂଶ ତାଙ୍କ ସନେଟ୍ ସୃଷ୍ଟିର ଆଦର୍ଶ ରୂପେ ଗ୍ରହଣ କରିଛନ୍ତି । ତାଙ୍କର ‘ପ୍ରଧାନ ପାଠ’ କବିତାଟି ସ୍ପେନସରିଆନ୍ ଢାଞ୍ଚାରେ ଲିଖିତ । ଏହାର ପଦ ସଂଯୋଜନା କ୍ରମପରି ସ୍ପେନସରିଆନ୍ ସନେଟ୍‌ର (ab ab bc bc cd cd ee ) ଅନୁରୂପ, ତାହା ଏଠାରେ ‘ପ୍ରଧାନ ପାଠ’ କବିତାର ଛନ୍ଦରୁ ଅନୁମେୟ ।

“ଆହା ହେ ପ୍ରଧାନ ପାଠ ନେତ୍ର ପ୍ରୀତିକର, a
ଭାବୁକର ଭାବମୟ ହୃଦୟରଞ୍ଜନ, b
ଗିରିଗିର ବିଭୂଷିତ ଶୁଭ୍ର-ସ୍ୱଚ୍ଛ-ନୀର, a
ଆତପତାପିତ-ତନୁ-ତାପ ବିଭଞ୍ଜନ b
ସମ୍ମୁଖ ଶିଖରୁ ଲମ୍ଫ ଦେଇ ବାରମ୍ବାର b
ସୁରମ୍ୟ ବିପିନ କୋଳେ ହୁଏ ପ୍ରପତିତ, c
ସଦାଶିବ ଶିରୁ ଯେହ୍ନେ ଜାହ୍ନବୀର ଧାର b
ତେଣୁ ଅଛୁ ତାରିବାକୁ ଭୁବନ ପତିତ, c
ବିକୀର୍ଣ୍ଣ ହେଉଛି ଦେହୁ ଶୀକର ନିକର, c
ବୃଷ୍ଟି ହେଉଅଛି ଯେହ୍ନେ ମୌକ୍ତିକ ପଟଳ, d
ମଧୁର ନିନାଦ କର ମ୍ଳାନ ଗ୍ଳାନି ହର. c
ଦେଖିଦେଲେ ମନପ୍ରାଣ ହୁଏ ସୁଶୀତଳ, d

(୧) ଗଙ୍ଗାଧର ମେହେର—ଗଙ୍ଗାଧର ଗ୍ରନ୍ଥାବଳୀ [୧୯୬୮] ଦାସ ବ୍ରଦର୍ସ ବ୍ରହ୍ମପୁର-ପୃ ୪୨୮/୪୨୯ ।

ସ୍ୱଚ୍ଛ ଜଳ କୁଣ୍ଡ ଫେନ ବୁଦ୍‌ବୁଦ ଛବଦ୍ୱେ, ଏ
ସ୍ୱଚ୍ଛମଳ ସ୍ରୋତ ହୋଇ ବନ ଗର୍ଭେ ବହେ ଏ ।"

ଗଙ୍ଗାଧର ସନେଟ୍ ରଚନାରେ ନିଜର ନିଷ୍ଠା ପ୍ରଦର୍ଶନ ସହିତ ଶୋକ ଗୀତିକା ( Elegy ) ରଚନାରେ ମଧ୍ୟ କୃତିତ୍ୱ ଅର୍ଜନ କରିଥିଲେ । 'ସ୍ୱର୍ଗୀୟ କବିବର ରାଧାନାଥ ରାୟ', 'ମଧୁସୂଦନ ରାଓଙ୍କ ସ୍ୱର୍ଗାରୋହଣ', 'ସ୍ୱର୍ଗୀୟା କୃଷ୍ଣା କୁମାରୀ', 'ଫକୀର ମୋହନଙ୍କ ମୃତ୍ୟୁ ଶଯ୍ୟା ନିକଟରେ ଉତ୍କଳମାତାର ରୋଦନ' ପ୍ରଭୃତି ତାଙ୍କର ଗୋଟିଏ ଗୋଟିଏ ଉଚ୍ଚକୋଟୀର ଶୋକଗୀତିକା ।

ଗଙ୍ଗାଧର ଯେଉଁ ସମୟରେ କାବ୍ୟ କବିତା ରଚନାରେ ମନୋନିବେଶ କରିଥିଲେ ସେତେବେଳେ ପାଶ୍ଚାତ୍ୟ ସାହିତ୍ୟର ଭାବସବୁ ନୂତନ ଭାବରେ ଓଡ଼ିଆ ସାହିତ୍ୟରେ ପ୍ରବେଶ କରୁଥିଲା । ରାଧାନାଥ, ମଧୁସୂଦନ, ନନ୍ଦକିଶୋର ପ୍ରମୁଖ ଏହି ପାଶ୍ଚାତ୍ୟ ଚିନ୍ତାଧାରାକୁ ପ୍ରଥମେ ଓଡ଼ିଆ କାବ୍ୟ କବିତାରେ ପ୍ରୟୋଗ କରିଥିଲେ । ସେହି ପ୍ରେରଣାର ବଶବର୍ତ୍ତୀ ହୋଇ ସମକାଳୀନ ସମୟର ପ୍ରଭାବରେ ଗଙ୍ଗାଧର ମଧ୍ୟ କେତେକାଂଶରେ ପାଶ୍ଚାତ୍ୟ ଚିନ୍ତାଧାରାଦ୍ୱାରା ଅନୁପ୍ରାଣିତ ହୋଇଛନ୍ତି । ସେ ଇଂରାଜୀ ସ୍କୁଲରେ କିମ୍ବା କଲେଜରେ ନ ପଢ଼ିଥିଲେ ମଧ୍ୟ କାବ୍ୟ-କବିତା ରଚନା କରିବା ସକାଶେ ଇଂରାଜୀ ଅଣଆନୁଷ୍ଠାନିକ ଭାବେ ଅଧ୍ୟୟନ କରିଥିବା ଅସମ୍ଭବ ନୁହେଁ ।

ଗଙ୍ଗାଧର ସୁଦୂର ବରପାଲିରେ ରହୁଥିଲେ ମଧ୍ୟ ତାଙ୍କର ତତ୍କାଳୀନ ସାହିତ୍ୟିକ ପରିବେଶ ସହିତ ସମ୍ପର୍କ ଥିଲା । ଊନବିଂଶ ଶତକରେ ପ୍ରକାଶିତ ପତ୍ର ପତ୍ରିକାମାନଙ୍କରେ ନିୟମିତ ଭାବରେ ସେ ଲେଖୁଥିଲେ । 'ସମ୍ବଲପୁର ହିତୈଷିଣୀ' ( ୧୮୮୯ ), 'ଉତ୍କଳ ପ୍ରଭା' (୧୮୯୧), 'ଇନ୍ଦ୍ରଧନୁ' (୧୮୯୩), 'ବକୁଳ' (୧୮୯୩), 'ଉତ୍କଳ ସାହିତ୍ୟ' (୧୮୯୭), 'ଗଞ୍ଜାମ ଓଡ଼ିଆ ହିତବାଦିନୀ' (୧୮୯୧), 'ଉତ୍କଳ ସେବକ' (୧୯୦୩), 'ମହାରଣ୍ଡ' (୧୯୧୯) ପ୍ରଭୃତି ପତ୍ରପତ୍ରିକା ସମ୍ପର୍କରେ ସୂଚନା ତାଙ୍କ କବିତାରେ ଦେଖିବାକୁ ମିଳେ । 'ସମ୍ବଲପୁର ହିତୈଷିଣୀର ନବବର୍ଷ ଉପଲକ୍ଷେ ଲିଖିତ', 'ହିତବାଦିନୀର ନବବର୍ଷୋପଲକ୍ଷେ ଲିଖିତ', 'ମହାରଣ୍ଡର ଜନ୍ମ', 'ଉତ୍କଳ ସେବକର ନବବର୍ଷ ଉପଲକ୍ଷରେ ରଚିତ' ପ୍ରଭୃତି ତାଙ୍କର ପତ୍ରପତ୍ରିକା ପ୍ରତି ଶ୍ରଦ୍ଧାର ଦ୍ୟୋତକ । ସେ 'ବିଦ୍ୟାରତ୍ନଙ୍କ ହିତୈଷିଣୀ' ଶୀର୍ଷକ ଏକ କବିତାରେ ତଦାନୀନ୍ତନ ପତ୍ରପତ୍ରିକା ଓ ସାହିତ୍ୟିକ ଦୃଷ୍ଟିପଟର ଏକ ହୃଦୟଗ୍ରାହୀ ଚିତ୍ର ଆଙ୍କିଛନ୍ତି । ତାହା ଏହିପରି ;

"ଲଭିଲ ମୟୂରଭଞ୍ଜେ ବାଣୀ ଆରାଧନା
ଧୂପଗନ୍ଧେ ମୁଗ୍ଧ ହୋଇଗଲେ ସୁରାଙ୍ଗନା ।
ଆରତି ପ୍ରଦୀପେ ଦେବୀ ବଦନ ମୟୂଖ
ଦୀପ୍ତ କଲା ମହାପାତ୍ର ପୂଜାରୀର ମୁଖ ।
ଭକ୍ତି ଦେଖି ପୂଜାହାରୀ ବାଣ୍ଟୁଥିଲେ ଭୋଗ,
ସନ୍ଦେଶ, ଝିଲ୍ପୁଡ଼ା, ଖଇ, ଯହିଁର ଯେ ଯୋଗ୍ୟ ।
'ଇନ୍ଦ୍ରଧନୁ', 'ବିଜୁଳି'ର ହେଲା ବାଦୀ ପାଲା,
ଚଳିଲା ଦାଣ୍ଡକା ଗୀତ ଚଉପଦୀମାଳା ।
କଟକରେ ବିଶ୍ୱନାଥ ସାହିତ୍ୟ-ସମାଜ
ଚଳାଇଲେ ପାଇ ଧନୀ ମାନୀଙ୍କ ସାହାଯ୍ୟ ।
'ହିତୈଷିଣୀ' ପୃଷ୍ଠାଲୋକେ ଚୌଦିଗ ଉଜ୍ଜ୍ୱଳ
ହେବାକୁ ଏ ଶୁଭଯୋଗ ଲଭିଲା ଉତ୍କଳ ।"

ସେ ସମୟରେ ପତ୍ରପତ୍ରିକାଗୁଡ଼ିକୁ କବି ଅଧ୍ୟୟନ କରିବା ସହିତ ସେମାନଙ୍କ ଆଭିମୁଖ୍ୟ ସହିତ ସମ୍ପୂର୍ଣ୍ଣ ପରିଚିତ ଥିବା ଏହି କେତେଧାଡ଼ିରୁ ଅନୁମେୟ ।

ସମସାମୟିକ ସମୟର ଭାବସ୍ପନ୍ଦନ ଅନେକତ୍ର ଗଙ୍ଗାଧରଙ୍କ ରଚନାରେ ଶୁଣିବାକୁ ମିଳେ । ଯେଉଁ ସମୟରେ ଓଡ଼ିଆ ଜାତି ପରାଧୀନତାର ବାତାବରଣରେ ନିର୍ଯ୍ୟାତିତ, ନିଷ୍ପେଷିତ ଓ ବ୍ୟଥିତ, ସେହିପରି ମୁହୂର୍ତ୍ତରେ କବି ଏ ଜାତିକୁ ଦେଇଛନ୍ତି ଯୁଗାନ୍ତକାରୀ ଉଦ୍‌ବୋଧନ । ବିବେକାନନ୍ଦ ଯେପରି ଭାରତବାସୀଙ୍କୁ ନିଜର ଲକ୍ଷ୍ୟ ପଥରେ ଅଗ୍ରସର ହେବାପାଇଁ ଆହ୍ୱାନ କରି କହିଥିଲେ, 'ଉତ୍ତିଷ୍ଠତ, ଜାଗ୍ରତ'..... ଠିକ୍ ସେହିପରି ଭାବରେ ଗଙ୍ଗାଧରଙ୍କ ଆହ୍ୱାନ —

"ଚୌଦିଗେ ଶୁଭୁଛି ଉଠ ଜାଗ ଜାଗ,
ଅଣ୍ଟା ଭିଡ଼ି ନିଜ କର୍ମେ ଲାଗ ଲାଗ ।
କର୍ମ-ବାଷ୍ପରଥ ଧାଇଁ ଶଙ୍ଖ ସ୍ୱନେ
ଆସି ଏବେ ଲାଗି ଗଲାଣି ଷ୍ଟେସନେ ।
ଚଢ଼ିବା ସମୟ ହେଲାଣି ନିକଟ
ଶୋଇ ପଡ଼ିଅଛ ନ କିଣି ଟିକଟ ?"

ଗଙ୍ଗାଧର ତାଙ୍କ ରଚନାବଳୀରେ ସମସାମୟିକ ସାମାଜିକ ଭାବପ୍ରବାହକୁ ବିଶେଷ ଗୁରୁତ୍ୱ ଦେଇଛନ୍ତି । ସେ ମର୍ମେ ମର୍ମେ ବୁଝିଥିଲେ ଯେ, ଆଧୁନିକତା

କେବଳ ପାଶ୍ଚାତ୍ୟ ସାହିତ୍ୟରୁ ଆହରଣ ଓ ସମୀକରଣ ନୁହେଁ, ବରଂ ସମାଜର ସବୁ ଅତ୍ୟାଚାର, ଅବିଚାର ଓ ଅନ୍ଧବିଶ୍ୱାସ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ହେଉଛି ଆଧୁନିକ ଲେଖକର ମୁଖ୍ୟ କର୍ତ୍ତବ୍ୟ । ସୁତରାଂ ପ୍ରଚଳିତ ସାମାଜିକ ବ୍ୟବସ୍ଥାର ଏକ ସ୍ୱୟଂସମ୍ପୂର୍ଣ୍ଣ ଚିତ୍ରାଙ୍କନ ଆଧୁନିକତାର ଅନ୍ୟତମ ଆଭିମୁଖ୍ୟ । ପ୍ରଚଳିତ ରୁଚି, ଜୀବନଧାରା ଓ ମୂଲ୍ୟବୋଧ ସମ୍ପର୍କରେ ଗଙ୍ଗାଧରଙ୍କ କବିତାବଳୀରୁ ପ୍ରଚୁର ଦୃଷ୍ଟାନ୍ତ ମିଳେ । ତାଙ୍କର ପଞ୍ଚାମୃତ, 'ତାକୁ ମଧ୍ୟ ବୋଲଥାନ୍ତି ଧର୍ମ ଅବତାର', 'ମହାଜନ' ପ୍ରଭୃତି କବିତା ଆଧୁନିକ ସମାଜ ସମ୍ପର୍କରେ ଏକ ଧାରଣା ପାଠକକୁ ଦେଇଥାଏ । 'ତାକୁ ମଧ୍ୟ ବୋଲଥାନ୍ତି ଧର୍ମ ଅବତାର' କବିତାଟିର ଆବେଦନ ଏବେ ବି ଜନମାନସକୁ ପ୍ରଭାବିତ କରେ । ଆଧୁନିକ ଯୁଗର ପଦସ୍ଥ କର୍ମଚାରୀମାନଙ୍କ ପ୍ରତି ତାଙ୍କର ଦୃଷ୍ଟିକୋଣ ଥିଲା ଏହିପରି ;

"ମନ ଯାର ବ୍ୟସ୍ତ ସଦା ପରସ୍ୱ ହରଣେ
ଧନ ଯାର ବିଦଳିତ ଗଣିକା ଚରଣେ ।
ଜୀବନ ଯା ଲକ୍ଷ ଲକ୍ଷ ଲୋକଙ୍କର ଭାର
ତାକୁ ମଧ୍ୟ ବୋଲଥାନ୍ତି ଧର୍ମ ଅବତାର ।
ବିଦ୍ୟା ଯାର, ମୋଡ଼ୁଥାଏ ଧର୍ମ ମାଥ ମୁଣ୍ଡ
ବୁଦ୍ଧି ଯାର କରୁଥାଏ ଶତ ସତ୍ୟ ଗୁଣ୍ଡ ।
ଧନେ କୀତ ହେଉଥାଏ ଯାହାର ବିଚାର
ତାକୁ ମଧ୍ୟ ବୋଲଥାନ୍ତି ଧର୍ମ ଅବତାର ।
ସୁବର୍ଣ୍ଣ ହରଣ କରି ତାମ୍ର କରେ ଦାନ,
ଧନେ କରିଥାଏ ପ୍ରଭୁ ସନ୍ତୋଷ ବିଧାନ ।
ଡାକିବାକୁ ଦୋଷ ହୁଏ ନାନା ଉପହାର
ତାକୁ ମଧ୍ୟ ବୋଲଥାନ୍ତି ଧର୍ମ ଅବତାର ।
ଭ୍ରମଣ ଖରଚ ପାଇଁ ପାଇଥାଏ ଭତ୍ତା,
ଖାଇଥାଏ ଏଣେ ମୋଡ଼ି ଦରିଦ୍ରଙ୍କ ମଥା ।
କରୁଥାଏ କ୍ଷମତାର ଅପବ୍ୟବହାର
ତାକୁ ମଧ୍ୟ ବୋଲଥାନ୍ତି ଧର୍ମ ଅବତାର ।"

ଯେତେବେଳେ ପ୍ରଚଳିତ ଆତ୍ମିକ ଚେତନା ଓ ସାମାଜିକ ମୂଲ୍ୟବୋଧ ମଧ୍ୟରେ ଦ୍ୱନ୍ଦ୍ୱ ଉପୁଜେ, ସେତେବେଳେ ଯେଉଁ ନୂତନ ଚେତନାଟି ରୂପଲାଭ କରେ, ତାହା ହେଉଛି ପ୍ରକୃତରେ ଆଧୁନିକତା । ଏହା ହେଉଛି ଯୁଗ ଯୁଗରୁ ଚାହିଁ ଆସିଥିବା ପ୍ରକ୍ଷେଣଶୀଳ ମନୋବୃତ୍ତି ବିରୁଦ୍ଧରେ ପ୍ରତିକ୍ରିୟା । ଏ ସନ୍ଦର୍ଭରେ

ଆଧୁନିକ ଚେତନା ଯେପରି ବାସ୍ତବ, ସେହିପରି ମାନବଧର୍ମୀ । ବାସ୍ତବତାର ଭିତ୍ତିଭୂମି ଉପରେ ମାନବିକତାର ପୂର୍ଣ୍ଣ ପ୍ରତିଷ୍ଠା ନିମନ୍ତେ ଆଧୁନିକ କବି ସବୁବେଳେ ସଚେତନ । ଊନବିଂଶ ଶତକରେ ବିଶେଷ କରି ଫକୀରମୋହନଙ୍କ ଲେଖାରେ ଆଧୁନିକତାର ଏହି ରୂପଟି ବେଶ୍ ସ୍ପଷ୍ଟ । ଗଙ୍ଗାଧର ତାଙ୍କ କାବ୍ୟ କବିତାର ବିଷୟବସ୍ତୁ ପ୍ରାଚୀନ ସାହିତ୍ୟରୁ ସଂଗ୍ରହ କରିଥିଲେ ମଧ୍ୟ ସେ ସବୁକୁ ମାନବିକ ସମ୍ବେଦନାରେ କରିଥିଲେ ପରିପୂର୍ଣ୍ଣ । ସେ ସୁଦୂର ଗଡ଼ଜାତରେ ଥିଲେ ବି ଆପଣାର ଦୃଷ୍ଟିକୋଣକୁ କରି ପାରିଥିଲେ ବିଶ୍ୱତୋମୁଖୀ । ଅତି ଅନ୍ତରଙ୍ଗ-ଭାବରେ ଜୀବନକୁ ସେ ବୁଝିଥିଲେ । ଏଠାରେ ଗଙ୍ଗାଧରଙ୍କ 'ତପସ୍ୱିନୀ'ରୁ ମାନବିକ ସହାନୁଭୂତିଶୀଳ ଏକ ବର୍ଣ୍ଣନା ଦେଖନ୍ତୁ ;

"ଧନଧାନ୍ୟ କିଛି ନ ଥିବ ପର୍ଣ୍ଣ କୁଟୀର ଆଧାର,
ଦୁଅ କରୁଥିବ ଗରଭେ ଚଳି ପାଦ-ପ୍ରହାର ।
ଖାଅ ମା ! ଖାଅ ମା ! ମା' ଘରେ ଚୋର କି ଅଛି ଲାଜ,
ଶୁଣି ରହିଛନ୍ତି ଚୋଟେ ତୋ ଏହି ସଖୀ ସମାଜ ।
ଅବଶେଷେ "ଅଁଉ ଦଉଚି" "ଆଉ ଦଉଚି" ବୋଲି
ଭୁଞ୍ଜାଇଲେ ସେହି ସଖୀଙ୍କି ଆଠ ଦଶୋଟି କୋଳି ।"

କବି ଗଙ୍ଗାଧର ଏପରି ଢଙ୍ଗରେ ବାସ୍ତବ ଜୀବନର ଚିତ୍ର ଆଙ୍କିଛନ୍ତି, ଯାହା ତାଙ୍କର ଗଭୀର ଜୀବନଦୃଷ୍ଟିର ସାର୍ଥକ ପରିଚୟ । ଗଙ୍ଗାଧରଙ୍କ କାବ୍ୟର ବିଷୟବସ୍ତୁ ପ୍ରାଚୀନ ସତ୍ୟ ; କିନ୍ତୁ ବାସ୍ତବ ଭୂମିରେ, ମାନବିକ ସହାନୁଭୂତିରେ ସେ ସବୁ ପ୍ରାଚୀନ ବିଷୟ ଆଧାରିତ କାବ୍ୟ କବିତା ନୂତନ ରୂପ ନେଇ ପାଠକ ସମ୍ମୁଖରେ ଉଭା ହୋଇଛି । ସେ ଯୁଗ ରୁଚିକୁ ନେଇ ଲେଖିବାରେ ଥିଲେ ପାରଙ୍ଗମ । ଗଙ୍ଗାଧରଙ୍କର ପ୍ରାଚୀନ କଥାବସ୍ତୁକୁ ନୂତନ ରୂପ କବିତାରେ ଦେବା ପାଇଁ ଶକ୍ତି ଥିଲା ଅପରିସୀମ । ଏ ସମ୍ପର୍କରେ ରାଧାନାଥ ନିଜେ ମଧ୍ୟ 'କୀଚକବଧ' କାବ୍ୟର ମନ୍ତବ୍ୟ ଦେବା ଅବସରରେ ଗଙ୍ଗାଧରଙ୍କ ଏ ଶକ୍ତିକୁ ସ୍ୱୀକାର କରି ଲେଖିଛନ୍ତି, "ପ୍ରାଚୀନ କାହାଣୀକୁ ଗଙ୍ଗାଧରଙ୍କ ରସମୟ ଲେଖନୀ ସମ୍ପୂର୍ଣ୍ଣ ନୂତନ ମୂର୍ତ୍ତିରେ ସାଧାରଣଙ୍କ ସମ୍ମୁଖରେ ଉପସ୍ଥାପିତ କରିଅଛି । ପୁରାତନରେ ନୂତନତା ଏବଂ ଆହୃତରେ ମୌଳିକତା ପ୍ରତିଫଳିତ କରିବାର ପ୍ରତିଭାର ବୁଦ୍ଧି-ପ୍ରତିପାଦିତ ଅଧିକାର ଅଟେ । ଏ ସମ୍ବନ୍ଧରେ କବି ଗଙ୍ଗାଧର ଯେପରି ଶକ୍ତିମତ୍ତା ଦେଖାଇଛନ୍ତି, ତାହା କି ପ୍ରାଚୀନ କି ଆଧୁନିକ ଯେକୌଣସି ଉତ୍କଳୀୟ କବିଙ୍କ ପକ୍ଷରେ ଗୌରବାବହ ହୁଅନ୍ତା ।" ଗଙ୍ଗାଧର ସେ ସମସ୍ତରେ କୁଆଡ଼େ

ପ୍ରଥମେ ପ୍ରାଚୀନ ଢଙ୍ଗରେ 'ରସ ରତ୍ନାକର' ନାମରେ ଏକ କାବ୍ୟ ଲେଖିଥିଲେ। ସେ ପରବର୍ତ୍ତୀ ସମୟରେ ତାକୁ ପ୍ରକାଶ କରିବାକୁ ବିମୁଖ ଥିଲେ। ଏ ସମ୍ପର୍କରେ ସେ କହନ୍ତି, "ବର୍ତ୍ତମାନ ଯୁଗରୁଚି ଅନେକ ପରିମାଣରେ ମାର୍ଜିତ ହୋଇ ଯାଇଥିବାରୁ ଏହା ତାହାର ବିରୋଧୀ, ତେଣୁ ପ୍ରକାଶଯୋଗ୍ୟ ନୁହେଁ।" ଏ ମନ୍ତବ୍ୟରୁ ଗଙ୍ଗାଧର କେତେ ଦୂର ଯୁଗସଚେତନ ଲେଖକ ଥିଲେ, ସହଜରେ ଅନୁମେୟ। ଊନବିଂଶ ଶତକର ସମସାମୟିକ ଯୁଗୀୟ ଚିନ୍ତାଧାରାକୁ ଗଙ୍ଗାଧର ସ୍ୱାଭାବିକ ଭାବରେ ତାଙ୍କ କବିତାରେ ପ୍ରକାଶ କରିଛନ୍ତି। ସେ ସମୟର ସ୍ୱଳ୍ପ-ଶିକ୍ଷିତ ମଣିଷମାନଙ୍କର ସ୍ୱଭାବ, ଓକିଲମାନଙ୍କ ଶୋଷଣ ମନୋବୃତ୍ତି ଓ ଶିକ୍ଷାର କୁପ୍ରଭାବ ସମ୍ପର୍କରେ ଗଙ୍ଗାଧର ମଧ୍ୟ ତାଙ୍କ କବିତାରେ ସୂଚନା ଦେବାକୁ ଭୁଲିନାହାନ୍ତି। ଏଠାରେ 'ପଞ୍ଚାମୃତ' କବିତାରୁ ଦୃଷ୍ଟାନ୍ତ ଦେଉଛୁ;

"ଅଳ୍ପ ଅଳ୍ପ ଶିକ୍ଷା ଲଭି ଉକଟେ କ୍ରୂର ଜନ
ମିଥ୍ୟା ଜାଲେ କରୁଛନ୍ତି ଅର୍ଥ ଅରଜନ।
ମିଥ୍ୟା ଅସ୍ତ୍ର—ତୀକ୍ଷ୍ଣ କରି ଅଦାଲତ ଶାଣେ
ମାରୁଛନ୍ତି ଅଶିକ୍ଷିତ ପରଜାଙ୍କ ପ୍ରାଣେ।
ଶାଣକାର ପରି ତହିଁ ଓକିଲ ମଣ୍ଡଳ
ଟଙ୍କାମୁଣି ଭରୁଛନ୍ତି ବସି ଦଳ ଦଳ।
ତାଙ୍କଠାରୁ ଯାଉ ଅବା ବାଦୀ ପ୍ରତିବାଦୀ
ସମସ୍ତରେ ହେଉଛନ୍ତି ତା'ର ଜୟନାଦୀ।
ଶିକ୍ଷାଫଳ ହେଉଅଛୁ, ମିଥ୍ୟା ପ୍ରସାରଣ,
ସତ୍ୟ ମୁଖେ ପ୍ରହାରଣ, ସାଧୁ, ପ୍ରତାରଣେ।"

ଆଧୁନିକ କବି ସବୁବେଳେ ଦୁଃସାହସର ପରିଚୟ ଦେଇଥାଏ। ତା'ର ଲେଖାରେ ଯୁଗର ଅନୀତି, ଦୁର୍ନୀତି ବିରୋଧରେ କମ୍ ପ୍ରତିବାଦ ନଥାଏ। ଗଙ୍ଗାଧରଙ୍କ କବିତାରେ ବ୍ରିଟିଶ ରାଜଶକ୍ତି ପ୍ରତି ପ୍ରବଳ ଆକ୍ଷେପ ତାଙ୍କର 'ଭାରତ ଭାବନା' କବିତାରେ ଦେଖିବାକୁ ମିଳେ। ସେ ପ୍ରକାରନ୍ତରେ ମହାତ୍ମାଗାନ୍ଧୀଙ୍କ ବ୍ରିଟିଶ ରାଜଶକ୍ତି ସହିତ ସଂଗ୍ରାମର ଜୟଗାନ କରିଛନ୍ତି। ତାଙ୍କର ସ୍ୱଦେଶାନୁରାଗ ଓ ସାହିତ୍ୟିକ ଦୁଃସାହସିକତାର ଚରମ ନିଦର୍ଶନ ହେଉଛି;

"ଗାନ୍ଧି ନିଜ କଷ୍ଟ ଗଣନା ନକରି
ବନ୍ଦୀପୁର କଲେ ଗମନ,
କାନନ ପାଦପ ଦୂରେ ଥାଇ କଲେ
ଯେତେ ହାହାକାର କ୍ରନ୍ଦନ।

ଜଗତେ, ଙ୍କାରତର ବାନା ଉଡ଼ିଲା ;
ପାର ନାଆଁ ମେଣ୍ଟି କଉଶଳ ବଳେ
ଉତ୍ସେ ସନାନନ୍ଦ ବଢ଼ିଲା ।"

ଗଙ୍ଗାଧରଙ୍କ ଲେଖମାନରେ ବୁଦ୍ଧିଦୀପ୍ତ ଚିନ୍ତା, ଆବେଗରେ ସଂଯମ ଓ ଭାଷା ପ୍ରୟୋଗରେ ଶୃଙ୍ଖଳା ପରିଲକ୍ଷିତ । ଆଧୁନିକ କବିମାନେ ଅଳ୍ପରେ ଯେପରି ବହୁ କଥା କହିଥାନ୍ତି, ଚିନ୍ତାକୁ ଶାଣିତ ଓ ବୁଦ୍ଧିଦୀପ୍ତ କରିଥାନ୍ତି, ଗଙ୍ଗାଧରଙ୍କ ଠାରେ ସେ ସବୁ ଏକାବେଳେକେ ସୁଲଭ । ଆବେଗ ଓ ଚିନ୍ତାରେ ଶୃଙ୍ଖଳା ତାଙ୍କ କବିତାର କଳାତ୍ମକ ମୂଲ୍ୟ ବୃଦ୍ଧିରେ ହୋଇଛି ବିଶେଷ ହିତାତ୍ମକ । ଜୀବନ ଅନ୍ୱେଷା ଓ ବିଶ୍ୱକୁ ଜାଣିବାର ଅଭୀପ୍ସା ହେଉଛି ଆଧୁନିକତାର ଅନ୍ୟତମ ଭୂଷଣ । ଗଙ୍ଗାଧର ବାସ୍ତବରେ ନିଜର ଆଧୁନିକ ମନର ସାର୍ଥକ ପରିଚୟ ଦେଇଛନ୍ତି 'ଉତ୍କଳ ଭାରତୀଙ୍କ 'ଉକ୍ତି' କବିତାରେ । ଏହି କବିତା ଯେ ସମସ୍ତର ଏକ ସାହିତ୍ୟିକ ବାତାବରଣରୁ ଜନ୍ମ ନେଇଥିଲା । ଓଡ଼ିଆ ଲିପି ସଂସ୍କାର ଆନ୍ଦୋଳନ ପରିପ୍ରେକ୍ଷୀରେ ବଂଶ ଶତକର ଆଦ୍ୟପାଦରେ କବିତାଟି ରଚିତ । ଏହି କବିତା ଭିତରେ ଯେଉଁ ମର୍ମବାଣୀ ରହିଛି, ତାହା ବାସ୍ତବରେ କବିଙ୍କ ତୀକ୍ଷ୍ଣ ଦୂରଦୃଷ୍ଟି ଓ ବିଶ୍ୱପ୍ରୀତିର ପରିଚାୟକ । ଆପଣାର ଚିନ୍ତାଧାରାକୁ ବିଶ୍ୱଜନୀନ କରିବାର ଭାବଟି ଥିଲା କବିଙ୍କର ଏହିପରି ;

"ତୁମ୍ଭେ ମୋତେ ଯେଉଁ ବେଶରେ ସାଜିବ
ସେ ବେଶ ଦେଖିବେ ଜଗତ ଜନେ,
ତୁମ୍ଭେ ଯଦି ମୋତେ ଯତନେ ମାଜିବ
ମାର୍ଜିତ ଉଜ୍ଜ୍ୱଳ ହେବି ଭୁବନେ ।"

ପୁଣି ସେହି କବିତାରେ ତାଙ୍କର ଅନ୍ୟ ଭାଷା, ଭାବ ପ୍ରତି ଉଦାରତା ମଧ୍ୟ ପ୍ରକଟିତ । ଯେପରି ;

"ପାଇଥିଲେ ଯଦି ବିଲାତି ପ୍ରସୂନ
ଥାଏ ଯଦି ତହିଁ ଜାତି ସୌରଭ,
ସୌରଭ ନ ଥିଲେ କାନ୍ତିରେ କାଞ୍ଚନ
ନ ଥିଲେ ବଢ଼ିବ କିମ୍ପା ଗୌରବ !
ମସ୍ତକେ ମୋ ଟୋପି ନ ଦେବ ବାବାରେ
ନ କାଢ଼ିବ ମୋର କରୁ କଙ୍କଣ,
ସିନ୍ଦୂର ବିନ୍ଦୁ ମୋ ଭାଲେ ରଖିବାରେ
ନିରନ୍ତର ମନେ ଥିବ ସ୍ମରଣ ।"

କବି ଗଙ୍ଗାଧର ଅଧୁନିକ କବିମାନଙ୍କ ପରି ଲୋକଗୀତର ଭାବ ନେଇ କବିତା ରଚନା କରିଛନ୍ତି । ଗାଁ ଗହଳର ଲୋକମାନଙ୍କ କଥିତ ଭାଷାର ଶବ୍ଦରାଜିକୁ

କବିତାରେ ବର୍ତ୍ତି ଦେବାରେ ସେ ଥିଲେ ଉପଯୁକ୍ତ ବନ୍ଧାର୍ଣ୍ଣୀ । ତାଙ୍କର କୃଷିକ ସଙ୍ଗୀତଗୁଡ଼ିକରେ ଲୋକଗୀତର ଅନେକ ଉପାଦାନ ରହିଛି । 'ଆଡ଼ି', 'କାନ୍ଦା', 'କୁଣାଶ', 'ପୁଆଳ', 'ଗୋତର', 'କୋଡ଼ି', 'ଗୁହାଳ', 'କଉଡ଼ିସି', 'ହଳିକ', 'ପହ୍ଲା', 'ଶରମ', 'ଗଳ୍ପ', 'ମାଝି', 'ଆଞ୍ଜୁ', 'ହିଡ଼', 'ଭିଜିବ', 'ନାଳୀ', 'ଡଙ୍କ', 'ମଣ୍ଡୁଆ', 'ଘୂଡ଼ୁଗ', 'ଛଣ', 'ହଡ଼ା', 'ଉପୁଡ଼ି' ପ୍ରଭୃତି ଶବ୍ଦଶବ୍ଦ ଗାଉଁଲି ଢଙ୍ଗର ବ୍ୟବହାର ତାଙ୍କ ରଚନାବଳୀରେ ଦେଖିବାକୁ ମିଳେ ।

ଆଧୁନିକ ଶିଳ୍ପୀ ନିଜ ମନର ବୈଚିତ୍ର୍ୟମୟ ଭାବକୁ ବିଶ୍ୱମୁଖୀ କରିବାକୁ ସତତ ପ୍ରୟାସୀ । ନିଜ ଭିତରେ ସେ ବିଶ୍ୱସତ୍ତା ଅନୁଭବ କରିପାରେ । ଗଙ୍ଗାଧର ନିଜର ଅହଂଚେତନାକୁ ସବୁବେଳେ ବିଶ୍ୱଆଡ଼କୁ କରିଛନ୍ତି ପ୍ରସାରିତ । 'ବିଶ୍ୱ ଏକ ପରିବାର' ଏଇ ଭାବ ତାଙ୍କ କବିତାର ବହୁସ୍ଥଳରେ ଫୁଟି ଉଠିଛି । ସେ 'ମାତୃଭୂମି' କବିତାରେ ଆପଣାର ଏଇ ମେଧାବୀ ଦୃଷ୍ଟିକୁ ବ୍ୟକ୍ତ କରିଛନ୍ତି । ତାହା ଏହିପରି—

"ଜ୍ଞାନ ବଳେ ଯେବେ ଜାଣେ ସମସ୍ତଙ୍କ
ଜନକ ଜଗତପତି
ସହୋଦର ଜ୍ଞାନ କରେ ଅବନୀର
ମାନବ ସମାଜ ପ୍ରତି ।
* * ଏହି ରୂପେ ଗ୍ରାମ-କଥା, ରାଜ୍ୟ କଥା
ଦେଶ କଥା, ବିଶ୍ୱକଥା
ମାନବ ଜୀବନେ ପ୍ରତୀତ ହେବାର
ଦର୍ଶିତ ହୁଏ ସର୍ବଥା ।"

ଗଙ୍ଗାଧର ଥିଲେ ଏକାଧାରରେ ପ୍ରାଚୀନପନ୍ଥୀମାନଙ୍କ ପାଇଁ ଯେପରି ପ୍ରାଚୀନତାର ପୋଷକ, ସେହିପରି ସେ ଥିଲେ ଆଧୁନିକ ପ୍ରେମୀମାନଙ୍କ ପାଇଁ ନୂତନତାର ଉପାସକ । ଉଭୟପନ୍ଥୀଙ୍କ ପାଖରେ ତାଙ୍କର କାବ୍ୟକବିତା ଥିଲା ଗ୍ରହଣୀୟ । ସେ ଯଥାର୍ଥରେ ପ୍ରାଚୀନତାର ଭିତ୍ତି ଉପରେ ତାଙ୍କର ନୂତନ ସାହିତ୍ୟ ସୌଧ ଗଢ଼ିଛନ୍ତି । ସ୍ୱାଭାବିକ ଭାବରେ ସେ ଆପଣାର ଭୂମି ଉପରେ ଠିଆହୋଇ ସଂସାରର ସବୁଆଡ଼କୁ ନିର୍ବିକାର ଚିତ୍ତରେ ଚକ୍ଷୁ ମେଲି ଦେଖିଛନ୍ତି । କୃତ୍ରିମ ରୂପରେ ପାଶ୍ଚାତ୍ୟ ଆମଦାନୀ ଆଧୁନିକତାର ଗଣ୍ଡି ଭିତରେ ନିଜର ଚିନ୍ତାଧାରାକୁ ଆବଦ୍ଧ ନକରି, ସେ ସ୍ୱାଭାବିକ ଭାବରେ ବିଶ୍ୱ ସମ୍ମୁଖରେ ଆପଣାର ନବୀନ ଚିନ୍ତାକୁ ଶୁଣାଇ ଯାଇଛନ୍ତି । ନବ ବିକଶିତ ଫୁଲର ସୌରଭ ପରି ତାଙ୍କର ସରସ କବିତାର ନବ ଆବେଦନ ଏବେ ବି ପାଠକକୁ ପ୍ରଭାବିତ କରେ । ସେଥିପାଇଁ ଗଙ୍ଗାଧର ସେ ସମୟରେ କାହିଁକି, ଏବେ ସୁଦ୍ଧା ଆମ ନିକଟରେ ଚିରଆଧୁନିକ କବି ରୂପେ ବଞ୍ଚିଛନ୍ତି ।

—*—

# ବିସ୍ମୃତ ସାଧକ ପଣ୍ଡିତ
# ନୀଳମଣି ମିଶ୍ର ତର୍କାଳଙ୍କାର

ଊନବିଂଶ ଶତକରେ ପାଶ୍ଚାତ୍ୟ ଶିକ୍ଷାର ପ୍ରସାର ମଧ୍ୟରେ ଯେଉଁ କେତେଜଣ ସାଧକ ସ୍ୱକୀୟ ବ୍ୟକ୍ତିତ୍ୱରେ ପ୍ରାଚ୍ୟବିଦ୍ୟାକୁ ଓଡ଼ିଶାରେ ବଞ୍ଚାଇ ରଖିଥିଲେ, ସେମାନଙ୍କ ମଧ୍ୟରେ ବରିଷ୍ଠ ପଣ୍ଡିତ ନୀଳମଣି ମିଶ୍ର ତର୍କାଳଙ୍କାର ସ୍ୱନାମଧନ୍ୟ । ସେ ଥିଲେ ସେ କାଳର ଜଣେ ଆଦର୍ଶ ଶିକ୍ଷକ, ସଂସ୍କୃତ ବିଦ୍ୱାନ୍ ଓ ଗୁଣଗ୍ରାହୀ ସାରସ୍ୱତ ସେବକ । ସଂସ୍କୃତ ଶାସ୍ତ୍ରାଲୋଚନାରେ, ସାଂସ୍କୃତିକ କାର୍ଯ୍ୟ ପରିଚାଳନାରେ, ଶ୍ରେଣୀକକ୍ଷରେ ଛାତ୍ରମାନଙ୍କ ଗଠନରେ ବିଦ୍ୟାଚର୍ଚ୍ଚାରେ, ଅତିଥି ସେବା ସତ୍କାରରେ, ନ୍ୟାୟ ପରିପୂର୍ଣ୍ଣ ସମ୍ମାନିତ ବିଚାରପତି ଭାବରେ ଓ ଲବ୍ଧପ୍ରତିଷ୍ଠ କବିରାଜ ଭାବରେ ତାଙ୍କର ପ୍ରଖ୍ୟାତି ଥିଲା ସୁବିଦିତ । ମାତ୍ର, ଅଧୁନା ସେ ବିସ୍ମୃତ । ଏକଦା ଆମର ସାମାଜିକ, ସାଂସ୍କୃତିକ ଜୀବନକୁ ସମୃଦ୍ଧ କରିଥିବା ଏହି ବିସ୍ମୃତ ସାଧକଙ୍କ ସମ୍ପର୍କରେ ଆଲୋଚନା କଲେ, ତତ୍କାଳୀନ ସାହିତ୍ୟିକ ପରମ୍ପରା ସମ୍ପର୍କରେ ବହୁ ଅଜ୍ଞାତ ପ୍ରସଙ୍ଗ ଜାଣିହେବ ।

ପଣ୍ଡିତ ନୀଳମଣି ମିଶ୍ର ୧୮୬୧ ମସିହାରେ ଗୁପ୍ତାକୁଞ୍ଜଭବ ଯାଜପୁରର ସପନପୁର ଗ୍ରାମରେ ବିଦ୍ୟାବାଗୀଶ ପରିବାରରେ ଜନ୍ମଗ୍ରହଣ କରିଥିଲେ । ବୈତରଣୀ ତୀର୍ଥ, ବିରଜା କ୍ଷେତ୍ର ଯେପରି 'ବରାହ, ବିରଜା, ସପ୍ତମାତୃକା, ନାଭିଗୟା ପ୍ରଭୃତି ଐତିହାସିକ କୀର୍ତ୍ତି ଦ୍ୱାରା ଥିଲା ଭାରତ ପ୍ରସିଦ୍ଧ, ଠିକ୍ ସେହିପରି ଯାଜପୁରର ସାତ ଶାସନ ବ୍ରାହ୍ମଣମାନେ ପାଣ୍ଡିତ୍ୟ, ଶାସ୍ତ୍ରାନୁଶୀଳନରେ ସମଗ୍ର ଭାରତବର୍ଷରେ ପ୍ରତିଷ୍ଠା ଅର୍ଜ୍ଜନ କରି ବିଦ୍ୟାଲଙ୍କାର, ବିଦ୍ୟାବାଗୀଶ, ଅଗ୍ନିହୋତ୍ରୀ, ତର୍କାଳଙ୍କାର, ନ୍ୟାୟାଳଙ୍କାର ପ୍ରଭୃତି ଉପାଧିରେ ଭୂଷିତ ହୋଇଥିଲେ । ଯାଜପୁରର ବ୍ରାହ୍ମଣ ଶାସନରୁ ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର, ମୃତ୍ୟୁଞ୍ଜୟ ବିଦ୍ୟାଲଙ୍କାର, ଭୁବନାନନ୍ଦ ନ୍ୟାୟାଳଙ୍କାର ପ୍ରମୁଖ ବଙ୍ଗଳା ଯାଇ ସେଠାରେ ଜୀବନ ଅତିବାହିତ କରି ବଙ୍ଗଳାର ସାଂସ୍କୃତିକ ନବଜାଗରଣରେ ହୋଇଥିଲେ ସହାୟକ । ଈଶ୍ୱର ଚନ୍ଦ୍ର ବିଦ୍ୟାସାଗରଙ୍କର ପଣ୍ଡିତ ନୀଳମଣି ମିଶ୍ରଙ୍କ ପିତା ଦାମୋଦର ବିଦ୍ୟାବାଗୀଶଙ୍କ ସହ

ଥିଲା ଘନିଷ୍ଠ ସମ୍ପର୍କ । ବିଦ୍ୟାସାଗର ତାଙ୍କର ତୀକ୍ଷ୍ଣ ଧୀଶକ୍ତି, ମନୀଷା ଓ ବିଶ୍ଳେଷଣ ଶକ୍ତିର ଭୂୟସୀ ପ୍ରଶଂସା କରିଛନ୍ତି । ପରିବାରର ପରମ୍ପରା ଅନୁଯାୟୀ ନୀଳମଣି ବାଲ୍ୟକାଳରୁ ସଂସ୍କୃତ ଶିକ୍ଷା କରିଥିଲେ । ପରେ ସେ ଅବଶ୍ୟ ଆନୁଷ୍ଠାନିକ ଭାବରେ ରେଭେନ୍ସା କଲେଜରୁ ଏଫ୍. ଏ. ପାଶ୍ କରି ଯାଜପୁର ଉଚ୍ଚଇଂରାଜୀ ବିଦ୍ୟାଳୟରେ ଶିକ୍ଷକତା କଲେ । ଶିକ୍ଷକ ଭାବରେ ସେ ଥିଲେ ଆଦର୍ଶ ସ୍ଥାନୀୟ । ଅଧ୍ୟାପନା ବ୍ୟତୀତ ଚରିତ୍ର ଗଠନ, ନୈତିକତା ଏସବୁକୁ ସେ ଗୁରୁତ୍ୱ ଦେଉଥିଲେ । ଶିକ୍ଷକତା ସହିତ କବିରାଜ ଭାବରେ ସେ ଯଶ ଅର୍ଜିଛନ୍ତି । ତାଙ୍କର ଚିକିତ୍ସାରେ ବହୁ ପୁରାତନ ରୋଗୀ ଆରୋଗ୍ୟ ଲାଭ କରୁଥିଲେ । ସେ ସମୟରେ ଶିକ୍ଷକମାନଙ୍କୁ ସାମ୍ମାନିକ ବିଚାରପତି ( Honorary Magistrate ) ମଧ୍ୟ କରାଯାଉଥିଲା । ପଣ୍ଡିତ ନୀଳମଣି ଏଭଳି ସୁଯୋଗ୍ୟ ସାମ୍ମାନିକ ବିଚାରପତି ହୋଇଥିଲେ । ଯାଜପୁରର ବିଭିନ୍ନ ମନ୍ଦିର, କୀର୍ତ୍ତି ସମ୍ପର୍କରେ ତାଙ୍କର ଅଗାଧ ଜ୍ଞାନ ଥିଲା । ବିଶିଷ୍ଟ ଐତିହାସିକ ମନମୋହନ ଚକ୍ରବର୍ତ୍ତୀ ଯାଜପୁରର ଏସ୍. ଡି. ଓ. ( ଡିସେମ୍ବର ୧୮୯୧ରୁ ଜୁନ୍ ୧୮୯୭ ) ଥିବାବେଳେ ଯାଜପୁରର ସାଂସ୍କୃତିକ ଓ ଐତିହାସିକ କୀର୍ତ୍ତି ଅଧ୍ୟୟନ ପାଇଁ ଏହି ପଣ୍ଡିତଙ୍କ ସାହାଯ୍ୟ ନେଇଥିଲେ । ଅତିଥିପରାୟଣତା, ସାଧୁତା, ଅମାୟିକତା, ପରୋପକାର, କର୍ତ୍ତବ୍ୟପରାୟଣତା ଓ ଶିଷ୍ଟ ଆଚରଣରେ ସେ ଥିଲେ ଅନୁକରଣୀୟ । ପରିବାରର ସମସ୍ତଙ୍କୁ ଯଥାଯୋଗ୍ୟ ରୂପେ ଗଠନ କରିବାରେ ତାଙ୍କର ଭୂମିକା ପ୍ରଶଂସାଯୋଗ୍ୟ । ତାଙ୍କର କନିଷ୍ଠଭ୍ରାତା ଥିଲେ ଊନବିଂଶ ଶତକର ପ୍ରସିଦ୍ଧ ଲେଖକ ରାମପାଳ ମିଶ୍ର । ତାଙ୍କର ପୁତ୍ରମାନେ ଓଡ଼ିଶାର ବିଶିଷ୍ଟ ପ୍ରଧାନଶିକ୍ଷକ, ଦେଓ୍ୱାନ ଭାବରେ ସାମାଜିକ କ୍ଷେତ୍ରରେ ନିଜ ନିଜର କୃତିତ୍ୱର ସ୍ୱାକ୍ଷର ରଖି ଯାଇଛନ୍ତି । ସାହିତ୍ୟ ସେବାରେ ମଧ୍ୟ ସେ ସ୍ୱତନ୍ତ୍ରଭାବର ପରିଚୟ ଦେଇଛନ୍ତି । ତାଙ୍କର 'ଅଦ୍ଭୁତ ସ୍ୱପ୍ନ', 'ଚନ୍ଦ୍ରା ତରଙ୍ଗିଣୀ', 'ଭକ୍ତିଧାରା' ଲେଖକ ରୂପେ ତାଙ୍କୁ ପ୍ରତିଷ୍ଠା ଦେଇଛି । ଏହିପରି ଏକ ବହୁତୋମୁଖୀ ପ୍ରତିଭାର ଅବସାନ ୧୯୦୪ ମସିହାରେ ଘଟିଥିଲା । ତାଙ୍କ ମୃତ୍ୟୁରେ ପ୍ରୀତିଅର୍ଘ୍ୟ ଜ୍ଞାପନ କରି ଉତ୍କଳ ସାହିତ୍ୟ ପତ୍ରିକାରେ ହରିହର ମହାପାତ୍ର ଯେଉଁ ଶୋକ-ଗୀତିକା ଲେଖିଥିଲେ, ସେଥିରୁ ତାଙ୍କ ବ୍ୟକ୍ତିତ୍ୱ ଆକଳନ କରାଯାଇପାରେ । ତା'ର କିୟଦଂଶ ଏହିପରି—

''ସଂସାର ସୁଖରେ ହୋଇ ବିମୁଖ
ଭଜୁଥିଲ ମାତୃଭଣ୍ଡାର ଟେକ
ଧରି ନାହିଁ କେବେ ପାଶ୍ଚାତ୍ୟ ଭେକ
ଅନୁସରି ଥିଲ ସଦା ବିବେକ
କାହିଁଗଲ ଗୁଣମଣି ହେ,

ଉତ୍କଳ ଜନନୀ ହୋଇଛନ୍ତି ବିଚଳିତ ।
ତବ ପୁଣ୍ୟ ଗୁଣ ଗୁଣି ହେ ।
* * କବି, ଗୁଣି, ଗୁରୁ ମହା ସନ୍ନ୍ୟାସୀ
କ୍ଷଣକେ ମରତ ବନ୍ଧନ ନାଶି
ଊର୍ଦ୍ଧ୍ୱ ଗମନରେ ବଳାଇ ମନ
କରିଲ ମୁହୂର୍ତ୍ତେ ମହାପ୍ରସ୍ଥାନ
ଗଲ କେଉଁ ଦିବ୍ୟଧାମେ ହେ,
ଅନ୍ତରରେ ଶାନ୍ତ ମହତ ପରାଣ
ମିଶିଗଲ ମହା ପ୍ରେମେ ହେ ।"
( ସ୍ୱର୍ଗତ ପଣ୍ଡିତ ନୀଳମଣି—ଉତ୍କଳ ସାହିତ୍ୟ – ୩୯/୯- ପୃ ୪୮୪ )

ତାଙ୍କ ମୃତ୍ୟୁରେ ଶୋକ ପ୍ରକାଶ କରି ନବଭାରତର ସମ୍ପାଦକ, ବିଶିଷ୍ଟ ଲେଖକ ପଣ୍ଡିତ ନୀଳକଣ୍ଠ ଦାସ ଲେଖିଥିଲେ; "ଯାଜପୁରର ପଣ୍ଡିତ ନୀଳମଣି ମିଶ୍ରଙ୍କର ଗତମାସରେ ପରଲୋକ ହୋଇଅଛି । ସେ ସୁପଣ୍ଡିତ, ସୁଲେଖକ ଓ ସୁଶିକ୍ଷକ ଥିଲେ । ତାଙ୍କର ପିତୃ ପିତାମହ ବଡ଼ ପଣ୍ଡିତ ଥିଲେ ଓ ଭ୍ରାତା ସ୍ୱର୍ଗତ ରାମପାଲି ମିଶ୍ରଙ୍କ 'ସୀତା ବିବାହ' ନାଟକର ଗ୍ରନ୍ଥକାର ରୂପେ ସମସ୍ତେ ଜାଣନ୍ତି । ଓଡ଼ିଶାରେ ତା'ପରେ ବହୁ ନାଟକ ଲେଖାହୋଇଛି; କିନ୍ତୁ 'ସୀତା ବିବାହ'କୁ କେହି ଟପିଛନ୍ତି ବୋଲି ମନେ ହୁଏନାହିଁ । ପଣ୍ଡିତ ନୀଳମଣି ମଧ୍ୟ ବଡ଼ ସାଧୁ ଚରିତ୍ର ଓ ସଦାଗ୍ରସ୍ତ ଥିଲେ । ୭୫ ବର୍ଷ ବୟସରେ ତାଙ୍କର କାଳ ହୋଇଲା । ବହୁଦିନ ଯାଜପୁର ସ୍କୁଲରେ ଶିକ୍ଷକ ଥାଇ ସେ ବହୁ ଛାତ୍ରଙ୍କ ହୃଦୟରେ ନିଜର ସ୍ଥାନ କରିପାରିଥିଲେ । ସେ ଇଂରେଜୀ, ସଂସ୍କୃତ ଓ ଓଡ଼ିଆ ସବୁ ପଢ଼ାଇ ପାରୁଥିଲେ । କବିରାଜିରେ ମଧ୍ୟ ସେ ବିଶେଷଜ୍ଞ ଥିଲେ । ଲୋକସେବା ଓ ଲୋକର ଉପକାରରେ ହିଁ ତାଙ୍କ କବିରାଜି ଲାଗୁଥିଲା । ବିଶେଷ କଥା, ସେ ଓଡ଼ିଶାର ଜଣେ ଆଦର୍ଶ ଗୃହସ୍ଥାଶ୍ରମୀ । * * * ଓଡ଼ିଶାରେ ଏପରି ଆଦର୍ଶ ବଡ଼ ବିରଳ । ଆମେ ତାଙ୍କ ଆଦର୍ଶର ପ୍ରଶଂସା ଓ ଆତ୍ମାର ସଦ୍‌ଗତି କାମନା କରୁଅଛୁ ।"
[ ଆଲୋଚନା-ସ୍ୱର୍ଗତ ନୀଳମଣି ମିଶ୍ର-ନବଭାରତ, ଧନୁ-୧୩୪୭-ପୃ ୫୪୭ ]

ତାଙ୍କର ବିୟୋଗରେ ଶୋକପ୍ରକାଶ ପୂର୍ବକ ଉତ୍କଳ ସାହିତ୍ୟ ପତ୍ରିକା ମଧ୍ୟ ଅନୁରୂପ ଭାବରେ ଲେଖିଥିଲେ, "ଗଭୀର ଦୁଃଖର ବିଷୟ ଏହି ଯେ, ଆମ୍ଭମାନଙ୍କର ଯାଜପୁର ନିବାସୀ ପଣ୍ଡିତ ନୀଳମଣି ମିଶ୍ର ତର୍କାଲଙ୍କାର ଆଉ ଇହଧାମରେ ନାହାନ୍ତି । ସେ ତାଙ୍କର ପରିବାର ତଥା ଦେଶବାସୀଙ୍କୁ ଶୋକସାଗରରେ ଭସାଇ ଦେଇ ଅମୃତଧାମକୁ ଚାଲି ଯାଇଅଛନ୍ତି । ପଣ୍ଡିତ ମହାଶୟ ତାଙ୍କର ଶୁଦ୍ଧ, ନିର୍ମଳ ଚରିତ୍ର, ଧର୍ମପ୍ରାଣତା, ବିଚକ୍ଷଣ ପାଣ୍ଡିତ୍ୟ ଓ ଉଦାର ସ୍ନେହ ଗୁଣରେ ସମସ୍ତଙ୍କର

ତିଭା ଓ ଭକ୍ତିର ସମନ୍ୱୟ ହୋଇଥିଲେ। ତାଙ୍କର ଆତିଥେୟତା ଆଜି ସର୍ବଜନ ସୁପରିଚିତ। ସେ ଏକାଧାରରେ ଜଣେ ସୁକବି, ବିଚକ୍ଷଣ ପଣ୍ଡିତ ଓ ଆଦର୍ଶ ପୁରୁଷ ଥିଲେ। ତାଙ୍କର ରଚିତ 'ଚିନ୍ତା ତରଙ୍ଗିଣୀ' ଓ 'ଭକ୍ତିଧାରା' କବିତା ପୁସ୍ତକ ଦ୍ୱୟ ଉତ୍କଳ ସାହିତ୍ୟରେ ଦୁଇଟି ବିଶିଷ୍ଟ ସମ୍ପଦ। ତାଙ୍କପରି ସତ୍ୟନିଷ୍ଠ, ନିରାଡ଼ମ୍ବର ଓ ନିଷ୍ଠାପର ବ୍ୟକ୍ତି ଆଜି ବିରଳ। ପଣ୍ଡିତ ମହାଶୟଙ୍କର ସ୍ମୃତିରକ୍ଷା କରିବା ଆଜି ଉତ୍କଳ ଦେଶ ପକ୍ଷରେ ଗୋଟିଏ ମହତ୍ କର୍ତ୍ତବ୍ୟ।"[ ବିବିଧ ପ୍ରସଙ୍ଗ— ଉତ୍କଳ ସାହିତ୍ୟ — ୩୦/୯ — ପୃ ୪୮୯ ପଣ୍ଡିତ ମହାଶୟଙ୍କ ମୃତ୍ୟୁରେ ତଦାନୀନ୍ତନ ପତ୍ର-ପତ୍ରିକା ଓ ବିଶିଷ୍ଟ ବ୍ୟକ୍ତିମାନେ ଏହିପରି ଶୋକ ଅଶ୍ରୁ ଅର୍ପଣ କରିଛନ୍ତି।

ପଣ୍ଡିତ ମହାଶୟଙ୍କର ଶିକ୍ଷକ ଭାବରେ ସମ୍ମାନ ଥିଲା ସୁଦୂର ପ୍ରସାରୀ। ସେ ଥିଲେ ଭକ୍ତକବି ମଧୁସୂଦନ ରାଓଙ୍କର ଅତ୍ୟନ୍ତ ପ୍ରିୟ ଶିଷ୍ୟ। ତାଙ୍କର ଶିକ୍ଷକତାରେ ତତ୍କାଳୀନ ଓଡ଼ିଶାର ସ୍କୁଲ ଇନ୍ସପେକ୍ଟର ରାଧାନାଥ ରାୟ ମୁଗ୍ଧ ହୋଇ ଯେଉଁ ପ୍ରଶଂସାସୂଚକ ମନ୍ତବ୍ୟ ଦେଇଛନ୍ତି, ତାହା କ୍ୱଚିତ୍ ଶିକ୍ଷକଙ୍କ ଭାଗ୍ୟରେ ଘଟିଛି। ଯାଜପୁର ହାଇସ୍କୁଲକୁ ୧୮୯୯ ମସିହା ଜାନୁୟାରୀ ୧୦, ୧୧ ଓ ୧୨ ତାରିଖରେ ପରିଦର୍ଶନ କରି କବିବର ରାଧାନାଥ ରାୟ ଶିକ୍ଷାବିଭାଗକୁ ଏ ସ୍କୁଲ ସମ୍ପର୍କରେ ଯେଉଁ ଉଚ୍ଚ ମନ୍ତବ୍ୟ ଦେଇଥିଲେ, ସେଥିରେ ପଣ୍ଡିତ ନୀଳମଣିଙ୍କ ସମ୍ପର୍କରେ ଏହିପରି ଲେଖିଥିଲେ, " The class was examined by the Head Pandit in a way which impressed me very favourably. He is a capable teacher and deserves a better post than the one he now holds. It is indeed a pleasure to hear him question his students in the subject in his charge." ସେ ମୁଖ୍ୟତଃ ସଂସ୍କୃତ ଶିକ୍ଷକ ଥିଲେ ସୁଦ୍ଧା ଇଂରାଜୀ, ଓଡ଼ିଆ ପ୍ରଭୃତି ବିଷୟମାନଙ୍କୁ ପଢ଼ାଇ ପାରୁଥିଲେ। ସୁବିଧା ଅନୁଯାୟୀ ଛାତ୍ରମାନଙ୍କୁ ଓଡ଼ିଶାର ଐତିହ୍ୟ, ସଂସ୍କୃତି ସମ୍ପର୍କରେ ମଧ୍ୟ ଶିକ୍ଷା ଦେଉଥିଲେ। ଛାତ୍ରମାନଙ୍କ ମଧ୍ୟରେ ସେବା, ବିନୟ, ପରୋପକାର ଓ ନୈତିକ ଭାବଧାରାର ବିକାଶ ପାଇଁ ସେ ସର୍ବଦା ଚେଷ୍ଟିତ ଥିଲେ।

ସାହିତ୍ୟିକ ଭାବରେ ତାଙ୍କର ପ୍ରତିଷ୍ଠା ବ୍ୟାପକ ନ ହେଲେ ସୁଦ୍ଧା କିଛି କମ୍ ନୁହେଁ। ସେ ଓଡ଼ିଆ, ସଂସ୍କୃତ ଉଭୟ ଭାଷାରେ କବିତା ଲେଖିବାରେ ଧୁରୀଣ ଥିଲେ। ତାଙ୍କ କବି ଜୀବନର ଆଦ୍ୟ ପରିଚୟ ମିଳିଥିଲା 'ଅଦ୍ଭୁତ ସ୍ୱପ୍ନ' କାବ୍ୟରେ। ଏହା ଏକ ଅସଂପୂର୍ଣ୍ଣ କାବ୍ୟ। ୧୮୯୧ ମସିହାରେ ଏହି କାବ୍ୟର

କିଛି ଅଂଶ 'ଉତ୍କଳପ୍ରଭା' ପତ୍ରିକାରେ ପ୍ରକାଶିତ ହୋଇଥିଲା । ଏହି କାବ୍ୟରେ ତାଙ୍କର ଉଦାର ପ୍ରକୃତିପ୍ରୀତି, ସୌନ୍ଦର୍ଯ୍ୟ ବୋଧ ଓ ଜାତୀୟତା ଫୁଟିଉଠିଛି । ଏହି କାବ୍ୟଟି ଏପରି ପ୍ରଭାବଶାଳୀ ଥିଲା ଯେ, ଏହାର ଅନୁକରଣରେ ପରବର୍ତ୍ତୀ ସମୟରେ ତାଙ୍କର ଅନୁଜ କାମପାଳ ମିଶ୍ର 'ଅପୂର୍ବ ସ୍ୱପ୍ନ' (୧୮୯୬) କାବ୍ୟ ରଚନା କରିଥିଲେ । କାମପାଳ ମିଶ୍ର ଏହି କାବ୍ୟର ଭୂମିକାରେ ଏ ସମ୍ପର୍କରେ ସୂଚନା ଦେଇ ଲେଖିଛନ୍ତି, "ଯେଉଁ ସମୟରେ ଉତ୍କଳ ପ୍ରଭା ଉଜ୍ଜ୍ୱଳ ପ୍ରଭା ହୋଇ ଉତ୍କଳର ଘରେ ଘରେ ପ୍ରକାଶ ପାଉଥିଲା, ସେହି ସମୟରେ ମୋର ମାନନୀୟ ଜ୍ୟେଷ୍ଠ ଭ୍ରାତା ଶ୍ରୀ ନୀଳମଣି ମିଶ୍ର ମହାଶୟ ଚଙ୍କେଲି ରାଗରେ 'ଅଦ୍ଭୁତ ସ୍ୱପ୍ନ' ନାମକ ଖଣ୍ଡେ କାବ୍ୟ ପ୍ରଣୟନ କରିବାକୁ ଇଚ୍ଛୁକ ହୋଇ ପ୍ରାୟ ୪୦ ପଦ ପର୍ଯ୍ୟନ୍ତ ରଚନା କରି କ୍ଷାନ୍ତ ହୋଇଥିଲେ । ତାଙ୍କର ସେହି ଅସଂପୂର୍ଣ୍ଣ କାବ୍ୟର ଆରମ୍ଭ ଏହିରୂପ ସୁମଧୁର —

"ଧନେ ହୋଇଥିଲା ରାକା ରଜନୀ
ଚନ୍ଦ୍ର କରେ ଧନ୍ୟଲତା ଅବନୀ ।
ତାର ହାରବନ୍ତି ଜ୍ୟୋତ୍ସ୍ନା ଦୁକୂଳା
ପୂର୍ଣ୍ଣ ଚନ୍ଦ୍ରାନନା ଅତି ମଞ୍ଜୁଳା ।
ରଜ ରାଜେଶ୍ୱରୀ ପ୍ରାୟେ ମେଦନୀ
ହୋଇଥିଲା ବଡ଼ ମନୋହାରିଣୀ ।" ଇତ୍ୟାଦି —

ସେହି ସମୟରେ ମୋର ଅଳ୍ପବୋଧ କବିତା ରଚନାଭିଳାଷ କୌଣସି ବିଷୟ ନିରୂପଣରେ ଅକ୍ଷମ ହୋଇ ସନ୍ତରଣ କରୁଥିଲା; କିନ୍ତୁ ଏହି ସୁଗନ୍ଧ କୁସୁମ-ଭୂଷିତ ଅସଂପୂର୍ଣ୍ଣ କାବ୍ୟ ବୃକ୍ଷଟିରୁ ଆଶ୍ରୟ ଲାଭ କରି ସ୍ଥିର ଓ ନିଶ୍ଚିନ୍ତ ହୋଇଥିଲା । ମୋର ଅକିଞ୍ଚିତ୍କର 'ଅପୂର୍ବ ସ୍ୱପ୍ନ'ଟିର ଏହା ମୂଳବୃତ୍ତାନ୍ତ ଅଟେ ।" (କାମପାଳ ମିଶ୍ର — ଅପୂର୍ବ ସ୍ୱପ୍ନ — ଭୂମିକା) 'ଅଦ୍ଭୁତ ସ୍ୱପ୍ନ' ପଣ୍ଡିତ ନୀଳମଣିଙ୍କର କ୍ଷୁଦ୍ର ଓ ଅସମ୍ପୂର୍ଣ୍ଣ କାବ୍ୟ ହେଲେ ସୁଦ୍ଧା ଏହା ଥିଲା ତାଙ୍କ ସାରସ୍ୱତ ସାଧନାର ସଫଳ ପ୍ରତିଶ୍ରୁତି । ପରବର୍ତ୍ତୀ ସମୟରେ 'ଭକ୍ତିଧାରା' ଓ 'ଚନ୍ଦ୍ରା ତରଙ୍ଗିଣୀ' ନାମରେ ଦୁଇଗୋଟି କବିତା ଗ୍ରନ୍ଥ ପ୍ରକାଶିତ । ଭକ୍ତିଧାରାର କବିତାଗୁଡ଼ିକ ମୁଖ୍ୟତଃ ଆଧ୍ୟାତ୍ମିକ ଭାବ ସମ୍ବଳିତ । ଏଥିରେ ପ୍ରାଚୀନ ଛନ୍ଦରେ ଦେବଦେବୀଙ୍କ ସ୍ତୁତି କରାଯାଇଛି । ସ୍ତୁତିମୂଳକ ଏହି କବିତାଗୁଡ଼ିକରେ କବିଙ୍କ ଜୀବନଦର୍ଶନ ପ୍ରକଟିତ । ବୈଷ୍ଣବୀୟ ଭକ୍ତମାନେ ଯେପରି ନିଜର ଦୈନ୍ୟ ପ୍ରକାଶ କରି ସେମାନଙ୍କ ଉପାସ୍ୟ ଦେବତାର ମହିମାଗାନ କରିଥାନ୍ତି, କବିଙ୍କ କବିତାଗୁଡ଼ିକରେ ସେହି ଭାବ ସଚରାଚର ପରିଲକ୍ଷିତ । ନଶ୍ୱର ସଂସାରରେ ଭକ୍ତି ଓ ଦେବବନ୍ଦନା ହିଁ

ଏକମାତ୍ର ଶ୍ରେୟ ଆଚରଣ ବୋଲି ସେ କହିଛନ୍ତି । ଦୟା, କ୍ଷମା, ଶ୍ରଦ୍ଧା, ଅହିଂସା, ପ୍ରେମ, ସ୍ନେହ ଓ ମାନବିକ ସହାନୁଭୂତି ଦ୍ୱାରା ଭକ୍ତିମାର୍ଗ ଅଧିକ ସ୍ପଷ୍ଟ । ଏହା ଥିଲା ତାଙ୍କର ଗଭୀର ବିଶ୍ୱାସ । 'ଭକ୍ତିଧାର'ର କବିତାଗୁଡ଼ିକ ପ୍ରାଚୀନ ଶୈଳୀରେ ରଚିତ ହେଲେ ମଧ୍ୟ ଏହା ସୁଖପାଠ୍ୟ । ବିଶିଷ୍ଟ ବିଦ୍ୱାନ୍ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ଏ ଗ୍ରନ୍ଥର ମୁଖବନ୍ଧ ରଚନା କରି କହିଛନ୍ତି, "'ଭକ୍ତି ଧାରା'ରେ ଭାଷା ଓ ଭାବର ସାମଞ୍ଜସ୍ୟ ସଂରକ୍ଷିତ ହୋଇଅଛି । ପ୍ରାଚୀନ ବୃତ୍ତିର ଅବଲମ୍ବନ ହେତୁ ଏହା ଉତ୍କଳର ସହୃଦୟ ପ୍ରାଣରେ ଆରାମ ପ୍ରଦାନ କରୁଅଛି । ସ୍ଥାନେ ସ୍ଥାନେ ଅଳଙ୍କାରର ଯଥାଯଥ ବିନ୍ୟାସବଶତଃ କବିତା ଅଙ୍ଗରୁ କମନୀୟତା, ପରିସ୍ଫୁଟ ହେଉଅଛି, ସ୍ଥାନେ ସ୍ଥାନେ କାବ୍ୟ ଗୁରୁତ୍ୱ ମଧ୍ୟ ବିକଶିତ ହୋଇଅଛି । କବିଙ୍କର ଯୋଗ, ବେଦାନ୍ତ ଓ ପୁରାଣ ଶାସ୍ତ୍ରାଦିରେ ଅଧିକାର ଥିବାର ଏହି କୃତିରେ ଯଥେଷ୍ଟ ପରିଚୟ ମିଳେ । କବି ଏହି ଗ୍ରନ୍ଥଟିର ନାମ 'ଭକ୍ତିଧାର' ଦେଇଅଛନ୍ତି । ଏ ସଙ୍ଗତ ହୋଇଅଛି । ମୁଁ ଏହାକୁ ବହୁବାର ପାଠ କରି ଏପରି ପ୍ରୀତ ହୋଇଅଛି ଯେ ଏହାକୁ 'ସ୍ତୁତି ରତ୍ନାବଳୀ' ନ କହି ରହି ପାରୁନାହିଁ ।" 'ଭକ୍ତିଧାରା'ରେ ଶେଷରେ ତିନିଗୋଟି ସଂସ୍କୃତ ରଚନା ରହିଛି । ସଂସ୍କୃତରେ ରଚିତ ଏହି ଭକ୍ତି ସ୍ତୋତ୍ରଗୁଡ଼ିକ ଯେପରି ସୁଲଳିତ, ସେହିପରି ଅନ୍ତଃସ୍ପର୍ଶୀ ।

ପଣ୍ଡିତ ନୀଳମଣିଙ୍କ 'ଚିନ୍ତାତରଙ୍ଗିଣୀ' ହେଉଛି ଗୀତିକବିତାର ସମାହାର । ଅତି ସରଳ ଭାବରେ ସେ ଏହି କବିତାଗୁଡ଼ିକୁ ଲେଖିଛନ୍ତି । ଅତି ସାଧାରଣ ପ୍ରସଙ୍ଗମାନଙ୍କୁ ନେଇ କବିଙ୍କ ଲେଖନୀ ଚଳଚଞ୍ଚଳ ହୋଇଛି । ସାଧାରଣ ଲୋକପ୍ରଚଳିତ ଭାଷାରେ ସରଳଭାବରେ ସେ ସମୟର କବି କ୍ୱଚିତ୍ ଏ ପ୍ରକାର କବିତା ଲେଖିଛନ୍ତି । ବୋଧହୁଏ ନନ୍ଦକିଶୋର ବଳଙ୍କୁ ବାଦ୍ ଦେଲେ ଆଉ କେହି ଏ ଧରଣର କବିତା ଲେଖିନାହାନ୍ତି । ଏଠାରେ କବିଙ୍କର 'ମୋ ପୁଷି' କବିତାଟିକୁ ବିଚାରକୁ ନିଆଯାଇପାରେ ।

"ଆ ଆ ରେ ପୁଷି, ଦେବି ଆଉଁସି ଶୋଇ ପଡ଼ିବୁ କୋଡ଼େ,
ପଡ଼ିଏ ଯାଉ ଖାଇବୁ ଭାତ ଚିଙ୍ଗୁଡ଼ି ମାଛ ପୋଡ଼େ ।
ମାଁ ମ୍ୟାଉଁ କରି ଲାଙ୍ଗୁଳ ହଲାଇ ଧରି ଥିବୁଟି ପିଣ୍ଡା,
ଦୁଧ ଖାଇବୁ, ମାଛ ଖାଇବୁ ଯେତେ ତୋହର ଇଚ୍ଛା ।
ଆଠ ଅଣିଆ ଘୁଙ୍ଗୁରୁ ମାଳ ବେକରେ ଦେବି ବାନ୍ଧି,
ରୋହି, ଭାକୁଡ଼ି, କଉ, ମାଗୁର ଖାଇବୁ ଦେବି ରାନ୍ଧି ।
କେଡ଼େ ସୁନ୍ଦର ଚିକ୍କଣ ଦେହ ଲାଗୁଛି ତୁଳା ପରି,
ମନ ହେଉଛି ଗୁରି ପଦାର ବସି ଥାଆନ୍ତି ଧରି ।

କିଏ ରେ ପୁତ୍ରି, ଗଢ଼ିଛୁ ତୋତେ ଏଡ଼େ ସୁନ୍ଦର କରି,
ଧନ୍ୟ ବିଧାତା ଧନ୍ୟ ତା' ହାତ ସେହି ତାହାକୁ ସର ।"

ଏ ଧରଣର କବିତା କିଶୋରଠାରୁ ବୃଦ୍ଧ ପର୍ଯ୍ୟନ୍ତ ସମସ୍ତଙ୍କର ବୋଧଗମ୍ୟ । କବିଙ୍କର ଶବ୍ଦଚୟନପ୍ରବୃତ୍ତି ଏଥିରେ ବେଶ୍ ଆକର୍ଷଣୀୟ ।

ଶୋକଗୀତିକା ରଚନାରେ କବିଙ୍କ ଦକ୍ଷତା କିଛି କମ୍ ନୁହେଁ । ପଣ୍ଡିତ ନୀଳମଣି ତାଙ୍କର ଶିକ୍ଷକ, ଭକ୍ତକବି ମଧୁସୂଦନଙ୍କ ତିରୋଧାନ ଉଦ୍ଦେଶ୍ୟରେ ଏକ ସୁନ୍ଦର ଗୀତିକବିତା ଲେଖିଛନ୍ତି । ମଧୁସୂଦନଙ୍କ କବିତ୍ୱ, ବ୍ୟକ୍ତିତ୍ୱ ଓ କୃତିତ୍ୱ ବିଶ୍ଳେଷଣରେ ଏହା ଏକ ସାର୍ଥକ ସୃଷ୍ଟି । ଏ କବିତାର କିୟଦଂଶ ଏହିପରି;

"ଉତ୍କଳ ପଣ୍ଡିତ-ସଭା-ମଣ୍ଡନ
କେଣେ ଗୁପ୍ତିଗଲ ମଧୁସୂଦନ ?
ସାହିତ୍ୟ-କାନନ-କଳ-କୋକିଳ
ତୁମ୍ଭ ବିହୁନେ ଉତ୍କଳ ବିକଳ,
କଳାନିଧି ହୀନ
ଶୋଭା ଲଭଇ କି ନୀଳ ଗଗନ ?
ମଧୁର ମୂରତି ମଧୁର ହାସ
ମଧୁର ଲେଖନ ମଧୁର ଭାଷ
ମାଧୁରୀ-ସଦନ ମଧୁସୂଦନ
କିଏ ଶୁଣାଇବ ସୁଧାବଚନ ?
ଉତ୍କଳ-ଭାରତୀ
କାହାଠାରେ ଏବେ ଲଭିବ ସ୍ଥିତି ।"

କବିତାଟି ଯେପରି ଶୈଳୀକ-ସୁଷମା ବିମଣ୍ଡିତ, ସେହିପରି ଭାବଗର୍ଭକ ।

'ଚନ୍ଦ୍ରାତରଙ୍ଗିଣୀ'ର କବିତାଗୁଡ଼ିକରେ କବିଙ୍କର ପ୍ରକୃତି ବର୍ଣ୍ଣନା ନିପୁଣତା ଅନେକାଂଶ ପ୍ରକାଶିତ । ବାହ୍ୟଜଗତ ସହିତ ମନୀଷର ଅନ୍ତଃପ୍ରକୃତିକୁ ସମନ୍ୱୟ କରି ଦେଖିବାରେ ସେ ଥିଲେ ଧୁରନ୍ଧର । ନବ୍ୟ-ସଭ୍ୟ-ଶିକ୍ଷିତ ମାନଙ୍କ ପ୍ରତି ଶ୍ଳେଷ ଓ ବିଦ୍ରୂପ ତାଙ୍କ କବିତାରେ ଊଣା ନୁହେଁ । ଏଥିରେ କବିଙ୍କ ମୌଳିକ ଚିନ୍ତାର ସ୍ୱର ବେଶ ସୁଲଭ ।

ପଣ୍ଡିତ ନୀଳମଣିଙ୍କ ପ୍ରତି ରାଧାନାଥ, ମଧୁସୂଦନ, ଗଙ୍ଗାଧର ଓ ନନ୍ଦକିଶୋର ପ୍ରଭୃତି କବିମାନଙ୍କର ପ୍ରଚୁର ଶ୍ରଦ୍ଧା ଥିଲା । ତାଙ୍କର ଅନୁଜ କାମପାଳ ମିଶ୍ର 'ଶିକ୍ଷା ଓ ସମାଲୋଚନା' ପ୍ରବନ୍ଧ ଉତ୍କଳ ସାହିତ୍ୟରେ ଲେଖି ସେ ସମୟରେ ଯେଉଁ ସାହିତ୍ୟିକ ବିତର୍କ ପ୍ରାଚୀନ ଓ ଆଧୁନିକ ସାହିତ୍ୟାନୁରାଗୀମାନଙ୍କ ମଧ୍ୟରେ ସୃଷ୍ଟି କରିଥିଲେ, ସେ ତାହାର ଏକ ସୁସ୍ଥ ସମାଧାନ କରିଥିଲେ । ଏ ସମ୍ପର୍କରେ

ସେ ରାଧାନାଥ ରାୟଙ୍କୁ ଯେଉଁ ପତ୍ରଟି ଦେଇଥିଲେ, ତାହା ତାଙ୍କର ଉଦାର, ନିରପେକ୍ଷ ଓ ଉନ୍ନତ ହୃଦୟର ପରିଚାୟକ । ଏଠାରେ ଅବିକଳ ସେହି ପତ୍ରଟି ଉଦ୍ଧାର କରାଯାଇପାରେ ;

ଶ୍ରୀହରିଃ ଶରଣଂ ଯାଜପୁର

ଆଶ୍ରିତ ବତ୍ସଳେଷୁ—ବହୁମାନ ପୁରଃସର ସବିନୟ ନିବେଦନମିଦଂ ।

ମହାଭାଗ,

ଗତ କଲ୍ୟ ସ୍କୁଲରେ ଆପଣଙ୍କ ଅନୁଗ୍ରହପତ୍ର ପାଠ କରି ଯେ ରୂପ ଆନନ୍ଦାନୁଭବ କରିଅଛି, ତାହା ସାମାନ୍ୟ ପତ୍ରଦ୍ୱାରା କିପରି ଜଣାଇବି ? ଗୁରୁ ଦୁଃଖ ଭାରାକ୍ରାନ୍ତ ହୃଦୟରୁ ଦୁଃଖ ଦୂରୀଭୂତ ହେଲେ ଚିତ୍ତ ଯେପରି ପରମୋଲ୍ଲାସ ଲାଭ କରେ, ତାହା ବଚନରେ କିମ୍ବା ଲେଖାରେ ବୁଝାଇବା ଅସମ୍ଭବ । କାମପାଳ ଶିକ୍ଷା ଓ ସମାଲୋଚନା ଲେଖି ବୃଥା ଯେ ଆପଣଙ୍କ ମନରେ ବ୍ୟଥା ଦେଇଥିଲି, ତନ୍ନିମିତ୍ତ ମୁଁ ନିରତିଶୟ ବ୍ୟଥିତ ହୋଇଥିଲି । ସ୍ୱୀୟ ଉଦାରତା ଗୁଣରେ ଆପଣ ସେ ବିଷୟ ବିସ୍ମୃତ ହୋଇଥିଲେ ସୁଦ୍ଧା ମୋ ହୃଦୟରେ ଏହା ପ୍ରଚ୍ଛନ୍ନ ଶେଲବତ୍ ପ୍ରୋଥିତ ଥିଲା । କୌଣସି ଦୁରଭିସନ୍ଧି ସାଧନାର୍ଥ ବା କୁଶିକ୍ଷା ପ୍ରଣୋଦିତ ହୋଇ ଆପଣଙ୍କ ଉଦ୍ଦେଶ୍ୟରେ ଉକ୍ତ ପ୍ରବନ୍ଧ ଲେଖିନାହିଁ ବୋଲି କାମପାଳ ମୋତେ ବାରବାର ଆଶ୍ୱାସନା ଦେଇଥିଲେ ମଧ୍ୟ ମୋ ମନ ପ୍ରବୋଧ ମାନି ନଥିଲା । ଆଜି ଆପଣଙ୍କ ବାକ୍ୟାମୃତରେ ତପ୍ତ ହୃଦୟ ଶୀତଳ ହେଲା । କୃତଘ୍ନତାପବାଦରୁ ମୁକ୍ତିଲାଭ କଲି । କାମପାଳର କାର୍ଯ୍ୟକଳାପ ସକାଶେ ମୋର ଦାୟିତ୍ୱ ନଥିଲେ ମଧ୍ୟ ଏ ବଂଶର ଚିରୋପକାରୀ ଆପଣଙ୍କର ଜଣେ ଅକାରଣ ଶତ୍ରୁ ବାହାରିବା ଅଳ୍ପ ନିନ୍ଦାର ବିଷୟ ନୁହେଁ । ବାଲ୍ୟାବସ୍ଥାରେ ମୁଁ ଆପଣଙ୍କର କୌଣସି କବିତା ପାଠ କରି ବୁଝାଇଦେଲେ କାମପାଳ ଅତିଶୟ ଆନନ୍ଦିତ ହୁଏ ଏବଂ ଆପଣଙ୍କର ଅନନ୍ୟ-ସାଧାରଣ ପ୍ରତିଭାର ଓ ଉପଯୁକ୍ତ ଶବ୍ଦପ୍ରୟୋଗଚାତୁରୀର ଭୂୟସୀ ପ୍ରଶଂସା କରେ । ଆପଣଙ୍କୁ ଓ ଶ୍ରଦ୍ଧେୟ ଶ୍ରୀଯୁକ୍ତ ମଧୁବାବୁ ମହାଶୟଙ୍କୁ ସେ ଅତ୍ୟନ୍ତ ଶ୍ରଦ୍ଧା ଓ ଭକ୍ତି କରେ । ଏ ରୂପ ବ୍ୟକ୍ତିର ଆପଣଙ୍କ ପ୍ରତି ଅକାରଣ ବୈରାଚରଣ ଅସ୍ୱାଭାବିକ । ତାଙ୍କର ଲେଖାରେ ଆପଣଙ୍କ ପ୍ରତି ବା ମଧୁବାବୁଙ୍କ ପ୍ରତି ଯଦି କୌଣସି କଟୂକ୍ତି ଚହ୍ନଯାଇଥାଏ, ତାହାହେଲେ ତାହା ତାହାର ଯୌବନ ସୁଲଭ ଅବିମୃଷ୍ୟକାରିତାର ଫଳ—ବିଦ୍ୱେଷ ବା ଅଭକ୍ତିର ନୁହେଁ । ଯାହାହେଉ, ଆପଣ ତାଙ୍କ ସହିତ ସାକ୍ଷାତ କରି ଯେ ପ୍ରୀତିଲାଭ କରିଅଛନ୍ତି ଏହା ଆମ୍ଭମାନଙ୍କର ପରମ ସୌଭାଗ୍ୟ । ଅଧୁନାତନ ଉତ୍କଳୀୟ ଦ୍ୱିଜକୁଳର ଶୋଚନୀୟ ଅବସ୍ଥା ଆପଣଙ୍କୁ ଅବିଦିତ ନୁହେଁ । ଉତ୍କଳୀୟ କେତେ ବ୍ରାହ୍ମଣ ପଣ୍ଡିତ ଆପଣଙ୍କଠାରୁ ଯେ କେତେ ପ୍ରକାରରେ ଉପକାର ପ୍ରାପ୍ତ ହୋଇଅଛନ୍ତି, ତାହା କୁହାଯାଇ

ନପାରେ । ଆପଣ ଯେପରି ଉଦାର, ସେହିପରି ଆଶ୍ରିତବତ୍ସଳ । ନଜାଣି କେତେବେଳେ ଯଦ୍ୟପି କୌଣସି ଅପରାଧ ହୁଏ, କ୍ଷମା କରିବେ । କାମପାଳ ବାଳକ, ସର୍ବୋତଭାବରେ ଆପଣଙ୍କର ଶାସ୍ୟ, ତାହାପ୍ରତି କରୁଣା ଦୃଷ୍ଟି ରଖିଥିବେ । ଆଶ୍ରିତ ବ୍ୟକ୍ତିଙ୍କର ଦୋଷ ମାର୍ଜନୀୟ, କାରଣ ସେମାନେ ଅନନ୍ୟାବଲମ୍ବ "ଭୂମୌ ସ୍ଖଳିତ ପାଦାନାଂ ଭୂମିରେବାବଲମ୍ବନଂ ।" ଭବଦାତ୍ମଜ ପରମ ସ୍ନେହାସ୍ପଦ ଶ୍ରୀଯୁକ୍ତ ମଧୁବାବୁଙ୍କୁ ମୋର ଶୁଭାଶୀର୍ବାଦ ଜଣାଇବେ । ଶୈଶବାବସ୍ଥାରେ ତାହାଙ୍କ ସହିତରେ ମୋର ଦେଖା । ସେ ସୌମ୍ୟ ମୂର୍ତ୍ତି ଯେ, ପ୍ରଚୁର ସତ୍ତ୍ୱଗୁଣର ଆଧାର ହେବ, ଏହା ସେହିଦିନରୁ ମୋର ଧାରଣା ଥିଲା । 'ଦାକ୍ଷିଣାତ୍ୟ ଭ୍ରମଣ' ପାଠକରି ତାହାଙ୍କର ଭାବୁକତା, ସତ୍ତ୍ୱ ପ୍ରବଣ ହୃଦୟବତ୍ତା, ବିନୟ, ନିରଭିମାନତ୍ୱ ପ୍ରଭୃତି ବିବିଧ ସଦ୍‌ଗୁଣର ପରିଚୟ ପାଇଅଛୁ । ପଦ୍ମରାଗ ଆକରରୁ କଦାପି କାଚ ସମ୍ଭବେ ନାହିଁ । ଜଗଦୀଶ୍ୱର ଦୀର୍ଘଜୀବୀ କରି ତାହାଙ୍କୁ ଉତ୍ତରୋତ୍ତର ଯଶୋଭାଗୀ କରନ୍ତୁ । ଗୋଲକାଠ ପ୍ରବେଶ କରିନଥିଲେ ପ୍ରଫୁଲ୍ଲ ଗୋଲାପର ସମ୍ପୂର୍ଣ୍ଣ ସୌରଭ ବିସ୍ତାର ହୋଇଥାନ୍ତା ; କିନ୍ତୁ ଏ ପୃଥିବୀରେ ଅମିଶ୍ର କଲ୍ୟାଣ ଦୁର୍ଲଭ । ପିତା ମହୋଦୟ ଆପଣଙ୍କ ପତ୍ର ପାଠକରି ପରମ ପ୍ରୀତ ହେଲେ । ଆପଣଙ୍କୁ ଶୁଭାଶୀର୍ବାଦ ଜଣାଇଅଛନ୍ତି ଏବଂ ଜଗଦୀଶ୍ୱରଙ୍କ ନିକଟରେ ବଂଶାବଚ୍ଛେଦ ଆପଣଙ୍କର ମଙ୍ଗଳ କାମନା କରୁଅଛନ୍ତି । ॥ ଇତି ॥

ଆପଣଙ୍କର ସ୍ନେହଲୋଲୁପ, ନୀଳମଣି

ଏ ଚିଠିରୁ ନୀଳମଣି ମିଶ୍ରଙ୍କର ରାଧାନାଥ ରାୟଙ୍କ ସହ ରହିଥିବା ପାରିବାରିକ ବନ୍ଧୁତା ଓ ଆତ୍ମୀୟତା ସହଜରେ ଅନୁମାନ କରାଯାଇପାରେ । ପୁଣି କାମପାଳ ମିଶ୍ରଙ୍କୁ ଜଣେ ସୁଧୀ ସାହିତ୍ୟିକ ଭାବେ ଗଢିବା ପାଇଁ ଅଗ୍ରଜ ଭାବରେ ତାଙ୍କର ଯେଉଁ ଦାୟିତ୍ୱ ଥିଲା, ତାହା ଏହି ପତ୍ରରୁ ଅନୁମେୟ । କାମପାଳଙ୍କ ସାହିତ୍ୟ ସାଧନା ପଥରେ ଏହି ଅଗ୍ରଜ ଯେ ଥିଲେ ପରମ ଶୁଭଚିନ୍ତକ, ଏଥିରେ ସନ୍ଦେହ ନାହିଁ ।

ପଣ୍ଡିତ ନୀଳମଣି ଥିଲେ ସେ କାଳର ଜଣେ ପ୍ରଖର ନିରପେକ୍ଷ ସାରସ୍ୱତ ସେବକ । ନିଷ୍ଠାପର ଭାବରେ ସେ ସାହିତ୍ୟ ସାଧନା କରିଛନ୍ତି । ମାତ୍ର ସେ ଥିଲେ ପ୍ରକାଶବିମୁଖ । ସୁତରାଂ, ଆତ୍ମଅଭିମାନୀ ଏବଂ ପ୍ରତିଭାଟି ନୀରବରେ ଭାବରେ ସାହିତ୍ୟ ସାଧନା କରିଥିଲେ ସୁଦ୍ଧା ସର୍ବସାଧାରଣ ତାଙ୍କ ପରିଚୟ ପାଇନାହାନ୍ତି । ଏବେ ସୁଦ୍ଧା ତାଙ୍କର କେତେକ କବିତା ପଢ଼ିଲେ ପାଠକକୁ ତାହା ପ୍ରଭାବିତ କରେ ଓ ଅନ୍ତରକୁ ଛୁଇଁ ଛୁଇଁଯାଏ । ଏ ଦୃଷ୍ଟିରୁ ଓଡ଼ିଆ ସାହିତ୍ୟର ଜଣେ ସାର୍ଥକ ସାରସ୍ୱତ ସାଧକ ଭାବେ ସେ ଅବଶ୍ୟ ଅଭିନନ୍ଦନୀୟ ।

—※—

# ସାରସ୍ୱତ ସେବକ ବ୍ରଜସୁନ୍ଦର ଦାସ

'ମୁକୁର' ପତ୍ରିକା ସମ୍ପାଦନା ହେଉଛି ବ୍ରଜସୁନ୍ଦରଙ୍କ ସାରସ୍ୱତ ଜୀବନର ଅକ୍ଷୟ କୀର୍ତ୍ତି । ଏହାର ସୁଯୋଗ୍ୟ ସମ୍ପାଦକ ଭାବେ ତାଙ୍କର ସୁଖ୍ୟାତି ସୁବିଦିତ । ଏହି ପତ୍ରିକା ମାଧ୍ୟମରେ ସେ ଓଡ଼ିଶାର ସାଂସ୍କୃତିକ ନବଜାଗରଣର ସ୍ୱପ୍ନ ଦେଖିଥିଲେ । ଆଦର୍ଶ ଜାତୀୟ ଜୀବନର ବିକାଶ, ଭାଷା ଭିତ୍ତିରେ ଓଡ଼ିଆ ଜାତିର ଏକତ୍ରୀକରଣ, ବୃହତ୍ତର ଜୀବନଦୃଷ୍ଟି ଓ ସମାଜସେବା ସଞ୍ଚାର ଆଭିମୁଖ୍ୟ ନେଇ ସେ ଏହି ପତ୍ରିକା ପ୍ରକାଶ କରିଥିଲେ । ସେ ଥିଲେ ଏକାଧାରରେ ଜଣେ ଦକ୍ଷ ସାହିତ୍ୟ ସମ୍ପାଦକ, ସଂସ୍କୃତିପ୍ରେମୀ ଓ ସମାଜସେବୀ । ସେ ସମୟର ଜଣେ ଗ୍ରାଜୁଏଟ୍ ହେଲେ ମଧ୍ୟ କୌଣସି ରାଜବୃତ୍ତି ନ କରି ସେ ସ୍ୱାଧୀନ ଭାବରେ ସାହିତ୍ୟ, ସମାଜ ଓ ଜାତି ପାଇଁ ନିଜକୁ ଉତ୍ସର୍ଗ କରିଥିଲେ । ଜଣେ ବିଶିଷ୍ଟ ସାହିତ୍ୟ ସାଧକ ଭାବେ ସେ ପ୍ରତିଷ୍ଠିତ ନ ହେଲେ ସୁଦ୍ଧା, ଜଣେ କୃତକର୍ମା ସାରସ୍ୱତ ସେବକ ଭାବରେ ସେ ଓଡ଼ିଆ ସାହିତ୍ୟର ଉନ୍ନତିକଳ୍ପେ ଯାହା କରି ଯାଇଛନ୍ତି, ତାହା ବାସ୍ତବରେ ତାତ୍ପର୍ଯ୍ୟପୂର୍ଣ୍ଣ ।

ବ୍ରଜସୁନ୍ଦର ଦାସଙ୍କ ଜୀବନ ଘଟଣାବହୁଳ । ସେ ୧୮୮୦ ମସିହା ଜୁଲାଇ ୨ ତାରିଖରେ ମାଜପୁରର ପ୍ରସିଦ୍ଧ ଜମିଦାର ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପ୍ରଚୁର ଧନସମ୍ପଦ ଥିଲେ ସୁଦ୍ଧା, ସେ ପ୍ରତି ସେ ଥିଲେ ଅନାସକ୍ତ । ନିଜର ଆର୍ଥିକ ଉନ୍ନତି ଅପେକ୍ଷା ଜାତୀୟ ଜୀବନର ଅଭିବୃଦ୍ଧି ପାଇଁ ସେ ଥିଲେ ଛାତ୍ରଜୀବନରୁ ତତ୍ପର । ବାଲ୍ୟକାଳରୁ ପିତୃ-ମାତୃ ବିୟୋଗ ତାଙ୍କୁ କରିଥିଲା ଆତ୍ମନିର୍ଭରଶୀଳ । ଜ୍ୟେଷ୍ଠ ଜମିଦାରୀ ଦାୟିତ୍ୱ ହରିବଲ୍ଲଭ ବାବୁଙ୍କୁ ଦେଇ ସେ ଦେଶ ସେବା, ସାହିତ୍ୟ ସଙ୍ଗଠନ, ଯୁବ ଅନୁଷ୍ଠାନ ଗଠନ ଓ ଉତ୍ତମ ପୁସ୍ତକ ପ୍ରକାଶନ ପାଇଁ ହୋଇଥିଲେ ଯତ୍ନଶୀଳ । ଛାତ୍ର ଅବସ୍ଥାରୁ ସେ ନିଜର ସାଙ୍ଗଠନିକ ଦକ୍ଷତାର ପରିଚୟ ଦେଇଥିଲେ । ଏହି ସମ୍ବନ୍ଧରେ ସେ 'ହରିଭକ୍ତି ପ୍ରଦାୟିନୀ ଶିକ୍ଷାବିବର୍ଦ୍ଧିନୀ ସଭା', (୧୮୯୪), 'ଅବକାରଭର୍ କ୍ଲବ୍' (୧୮୯୭), 'କେନ୍ଦ୍ରୀୟ ତରୁଣ ଉତ୍କଳ ସଂଘ' (୧୯୦୦) 'କର୍ତ୍ତବ୍ୟବୋଧିନୀ ସମିତି'

(୧୯୦୨) ପ୍ରଭୃତି ଅନୁଷ୍ଠାନ ସହିତ ସମ୍ପୃକ୍ତ ଥିଲେ । ଏହିସବୁ ଅନୁଷ୍ଠାନମାନଙ୍କରେ ସେ ଓ ତାଙ୍କ ବନ୍ଧୁ ଗୋପବନ୍ଧୁ, ଅଭିରାମ ଭଞ୍ଜ, କାମପାଲ ମିଶ୍ର ପ୍ରମୁଖ ସମ୍ପୃକ୍ତ ଥିଲେ । ବିଶେଷ କରି କର୍ତ୍ତବ୍ୟବୋଧିନୀ ସମିତିର ବୈଠକ ଛୁଟି ଦିନ ମାନଙ୍କରେ କଟକର ବିନୋଦ ବିହାରୀ ମଠର ପ୍ରାଙ୍ଗଣରେ ଅନୁଷ୍ଠିତ ହେଉଥିଲା । ଏହି ବୈଠକରେ ହିନ୍ଦୁ ଧର୍ମର ନୀତି, କର୍ମ ବିଶ୍ୱାସ ଓ ସହନଶୀଳତା ସମ୍ପର୍କରେ ବ୍ୟାପକ ଚର୍ଚ୍ଚା ହେଉଥିଲା । କେନ୍ଦ୍ରୀୟ ତିରୁଣ ଉତ୍କଳ ସଙ୍ଘ ଜାତିର ସୁଖ ସୌଭାଗ୍ୟ ପାଇଁ ସର୍ବଦା ଚେଷ୍ଟିତ ଥିଲା । ଅବକରଭର୍ କ୍ଲବ ଆନୁକୂଲ୍ୟରେ ସାହିତ୍ୟ ଓ ସଂସ୍କୃତି ବିଷୟରେ ଆଲୋଚନାଚକ୍ରମାନ ଅନୁଷ୍ଠିତ ହେଉଥିଲା । ହରଭକ୍ତି ପ୍ରଦାୟିନୀ, ଶିକ୍ଷା ବିବର୍ଦ୍ଧିନୀ ସଭା ପଲ୍ଲୀଜୀବନର ଉନ୍ନତି କଳ୍ପେ ଥିଲା ଅଭିପ୍ରେତ । ଏହି ଗୁଡିକ ଅନୁଷ୍ଠାନ ତାଙ୍କୁ ସାଧାରଣ ଲୋକ ଜୀବନ ସମ୍ପର୍କରେ ଆସିବା ସହିତ, ଧର୍ମ, ଦର୍ଶନ, ସାହିତ୍ୟ ଓ ଦେଶସେବା ପାଇଁ ଦେଇଥିଲା ଅଜସ୍ର ପ୍ରେରଣା । ଏହି ପ୍ରେରଣା ବଳରେ ସେ ୧୯୦୩ ମସିହା ଡିସେମ୍ବର ୩୦ ତାରିଖରେ ପ୍ରତିଷ୍ଠିତ ଉତ୍କଳ ସମ୍ମିଳନୀରେ ଯୋଗଦାନ ସହିତ ହେଲେ ଏହାର କାର୍ଯ୍ୟନିର୍ବାହୀ ସମିତିର ସଭ୍ୟ । ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ଆହ୍ୱାନରେ ଦେଶ ନିର୍ମାଣର ସ୍ୱପ୍ନରେ ବିଭୋର ହୋଇ ସେହିଦିନରୁ ସେ ବିଭିନ୍ନ କ୍ଷେତ୍ରରେ ନିଜକୁ ନିୟୋଜିତ କରିଛନ୍ତି ।

ବ୍ରଜସୁନ୍ଦର ଦାସ ଜଣେ ରାଜନୀତିଜ୍ଞ ଓ ଦେଶସେବୀ ଅପେକ୍ଷା 'ମୁକୁର' ପତ୍ରିକାର ସମ୍ପାଦକ ଭାବରେ ଅଧିକ ସ୍ମରଣୀୟ । ଏହି ପତ୍ରିକାଟି ସେ କାଳର ତରୁଣ ପ୍ରାଣରେ ସାହିତ୍ୟ ସୃଷ୍ଟି ପାଇଁ ଦେଇଥିଲା ଏକ ନବ ଉନ୍ମାଦନା । 'କର୍ତ୍ତବ୍ୟ ବୋଧିନୀ ସମିତି' ନାମରେ ଯେଉଁ ଅନୁଷ୍ଠାନଟି ବ୍ରଜସୁନ୍ଦରଙ୍କ ଉଦ୍ୟମରେ ଗଢ଼ି ଉଠିଥିଲା, 'ମୁକୁର' ପତ୍ରିକା ଥିଲା ସେଇ ଉଦ୍ୟମର ଫଳଶ୍ରୁତି । ବ୍ରଜସୁନ୍ଦରଙ୍କ ସହିତ ଏହି ପତ୍ରିକା ପ୍ରକାଶରେ ଅଭିରାମ ଭଞ୍ଜ, ଗୋପବନ୍ଧୁ ଦାସ, କାମପାଲ ମିଶ୍ର ପ୍ରମୁଖ ସହଯୋଗ କରିଥିଲେ । ଏହି ପତ୍ରିକା ଜରିଆରେ ସେ ଓଡ଼ିଆ ଭାଷା ସାହିତ୍ୟର ସୁରକ୍ଷା, ଓଡ଼ିଆମାନଙ୍କ ସ୍ୱାତନ୍ତ୍ର୍ୟ ଓ ସାହିତ୍ୟ-ସଂସ୍କୃତି ଭିତ୍ତିରେ ଓଡ଼ିଶାର ଜାତୀୟ ଜୀବନର ବିକାଶ ପାଇଁ ଥିଲେ ସଂକଳ୍ପବଦ୍ଧ । ଏହି ସମୟରେ ଅବଶ୍ୟ 'ଉତ୍କଳ ସାହିତ୍ୟ' ପତ୍ରିକା ନିୟମିତ ବାହାରୁଥିଲା ; କିନ୍ତୁ ସେଥିରେ ବ୍ରାହ୍ମଧର୍ମ ସମ୍ପର୍କୀୟ ବହୁ ଲେଖା, ବଙ୍ଗଳାରୁ ଭାବ ଗ୍ରହଣ କରି ଓଡ଼ିଆ ଭାଷାରେ କେତେକ ଲେଖା ଓ ବହୁ ପରିମାଣରେ ପ୍ରବନ୍ଧ ବାହାରୁଥିବାରୁ ପତ୍ରିକାଟି ସାଧାରଣ ପାଠକଠାରୁ ଅନେକାଂଶରେ ଦୂରେଇ ଯାଇଥିଲା । ଏ ହେତୁ ଓଡ଼ିଆ ପାଠକ ପାଇଁ ଏକ ଅଭିନବ ରୁଚିର ପତ୍ରିକା ପ୍ରକାଶର ଆବଶ୍ୟକତା ରହିଥିଲା । ତରୁଣ ବ୍ରଜସୁନ୍ଦର ସେ ସକାଶେ ପ୍ରକାଶ କରିଥିଲେ 'ମୁକୁର' ପତ୍ରିକା

( ପ୍ରକାଶ କାଳ ୧୯୦୬ ମସିହା ଏପ୍ରିଲ ମାସ ) । ଏହି ପତ୍ରିକାଟି ଥିଲା ହିନ୍ଦୁ ଧର୍ମ ନବଜାଗରଣର ମୁଖପତ୍ର । ପୁଣି ତରୁଣମାନଙ୍କୁ ଉତ୍ସାହ ଦାନରେ ଏହି ପତ୍ରିକା କେବେ ହେଲେ କୁଣ୍ଠାବୋଧ କରିନଥିଲା । ଏ ସମ୍ପର୍କରେ ସ୍ମୃତିଚାରଣ କରି ଉତ୍କଳର ହରେକୃଷ୍ଣ ମହତାବ କହିଛନ୍ତି; "ଆମ ଛାତ୍ର ଅବସ୍ଥାରେ 'ମୁକୁର' ପ୍ରତି ଆମେ ବେଶୀ ଆକୃଷ୍ଟ ଥିଲୁ, 'ଉତ୍କଳ ସାହିତ୍ୟ' ପ୍ରତି ନୁହେଁ, କାରଣ ମୁକୁରରେ ଯେଉଁ ସବୁ କବିତା ବା ପ୍ରବନ୍ଧ ବାହାରୁଥିଲା, ତାହା ଆମମାନଙ୍କ ପକ୍ଷେ ବେଶ୍ ଉତ୍ସାହଜନକ ଥିଲା । 'ମୁକୁର' ପତ୍ରିକା ସେ ସମୟରେ ଅତି ପ୍ରଧାନ ଥିଲା ଏବଂ ମୁକୁର ପ୍ରେସ୍ ମଧ୍ୟ ପ୍ରଧାନ ଥିଲା । ** ମୁକୁର ପତ୍ରିକାର ସାହିତ୍ୟ ପ୍ରତି ଯେଉଁ ଅବଦାନ, ସେପରି କୌଣସି ସାହିତ୍ୟ ସମୀକ୍ଷକ ଯତ୍ନ କରୁନାହାନ୍ତି, ଲେଖୁନାହାଁନ୍ତି କି ଜାଣି ପାରୁନାହାନ୍ତି ।" [ଦେଶପ୍ରାଣ ବ୍ରଜସୁନ୍ଦର (୧୯୮୩) ପୃ-୮୫] ମୁକୁର ପତ୍ରିକରେ ହିନ୍ଦୁ ଧର୍ମ ସମ୍ପର୍କୀୟ ରଚନାଗୁଡ଼ିକ ବୃହତ୍ତର ଦୃଷ୍ଟିକୋଣ ନେଇ ହେଉଥିଲା ପ୍ରକାଶିତ । ହିନ୍ଦୁ ଧର୍ମର ପ୍ରାଚୀନତା, ସ୍ୱାତନ୍ତ୍ର୍ୟ ଓ ଏହାର ଆଦର୍ଶ ପ୍ରତିପାଦନ ମୂଳକ ଲେଖାଗୁଡ଼ିକ ବହୁ ପରିମାଣରେ ଏହି ପତ୍ରିକାର ପୃଷ୍ଠା ମଣ୍ଡନ କରିଥିଲା । ଏସବୁ ଲେଖାମାନଙ୍କରେ ରାମକୃଷ୍ଣ ପରମହଂସ ଓ ବିବେକା—ନନ୍ଦଙ୍କ ଚିନ୍ତାଧାରାର ମୁଦ୍ରାଙ୍କ ଦେଖିବାକୁ ମିଳେ । ଏ ଧରଣର ଯେଉଁ ପ୍ରବନ୍ଧଗୁଡ଼ିକ ଏହି ପତ୍ରିକାରେ ପ୍ରକାଶିତ ସେଗୁଡ଼ିକ ମଧ୍ୟରେ ରାମଶଙ୍କର ରାୟଙ୍କ 'ବେଦ ଓ ଧର୍ମ', ଜଗବନ୍ଧୁ ସିଂହଙ୍କ 'ଧର୍ମବଳ', ଗଣପତି ଦାସଙ୍କ 'ହିନ୍ଦୁଧର୍ମ ତତ୍ତ୍ୱ', ଗୋପବନ୍ଧୁ ଦାସଙ୍କ 'ଉପାସନା' ଆର୍ତ୍ତବଲ୍ଲଭ ମହାନ୍ତିଙ୍କ 'ପ୍ରାଚୀନ ଭାରତର ମଠ', ରାମଶଙ୍କର ରାୟଙ୍କ 'ଅହିଂସା ପରମ ଧର୍ମ' ପ୍ରଭୃତି ପ୍ରଧାନ । ଧର୍ମକୁ ଏକ ବ୍ୟାପକ ତଥା ଜନମଙ୍ଗଳ ପୃଷ୍ଠଭୂମିରୁ ଅଧ୍ୟୟନ କରିବାରେ ଏହି ପ୍ରବନ୍ଧଗୁଡ଼ିକ ତାତ୍ପର୍ଯ୍ୟପୂର୍ଣ୍ଣ । ଧର୍ମର ବ୍ୟାବହାରିକ ମୂଲ୍ୟବୋଧ ଓ ଏହାର ଜନମଙ୍ଗଳ ଦିଗ ସମ୍ପର୍କରେ ସମସ୍ତଙ୍କୁ ସଚେତନ କରିବା ଥିଲା ଏହି ପ୍ରବନ୍ଧଗୁଡ଼ିକର ଉଦ୍ଦେଶ୍ୟ । ଶ୍ରୀ ରାମକୃଷ୍ଣଙ୍କ ଧର୍ମ ସମ୍ବନ୍ଧୀୟ ଯାବତୀୟ ଉପଦେଶ 'ମୁକୁର' ପତ୍ରିକାରେ ହେଉଥିଲା ପ୍ରକାଶିତ । ଏହି ପ୍ରବନ୍ଧଟି 'ଶ୍ରୀ ରାମକୃଷ୍ଣ ଉପଦେଶାମୃତ' ଶିରୋନାମାରେ କୃଷ୍ଣଚନ୍ଦ୍ର ସେନ୍‌ଗୁପ୍ତଙ୍କ ଦ୍ୱାରା ଲିଖିତ ହୋଇ ଏହି ପତ୍ରିକାର ସଂଖ୍ୟାମାନଙ୍କରେ କିଛିକାଳ ଧରି ଧାରାବାହିକ ପ୍ରକାଶିତ ।

ବ୍ରଜସୁନ୍ଦର ଦାସଙ୍କର ସଂସ୍କାରକ ଭାବରେ ଖ୍ୟାତି କିଛି କମ୍ ନୁହେଁ । ସତ୍ୟବାଦୀ ବନବିଦ୍ୟାଳୟର ଗୋପବନ୍ଧୁ, ନୀଳକଣ୍ଠ ପ୍ରମୁଖଙ୍କ ସଂସ୍କାର ପ୍ରୟାସ ମନୋବୃତ୍ତିକୁ ମୁକୁର ପତ୍ରିକା ଯଥେଷ୍ଟ ଉତ୍ସାହିତ କରିଥିଲା । ମୁକୁର ପତ୍ରିକାରେ ଗୋପବନ୍ଧୁ ଦାସଙ୍କ 'ବିବାହରେ ଅର୍ଥ ପ୍ରସଙ୍ଗ' ଶୀର୍ଷକ ଏକ ସଂସ୍କାରଧର୍ମୀ

ପ୍ରବନ୍ଧ ଦୀର୍ଘ ସମୟ ଧରି ଧାରାବାହିକ ଭାବେ ପ୍ରକାଶିତ ହୋଇଥିଲା । ଏହି ପ୍ରବନ୍ଧରେ ସେ ହିନ୍ଦୁ ବିବାହର ମହନୀୟତା ବିଚାର କରିବା ସହିତ ବିବାହକୁ ଯଥାସମ୍ଭବ ସମିତ ଢଙ୍ଗରେ ସମାହିତ କରିବାପାଇଁ ପରାମର୍ଶ ଦେଇଛନ୍ତି । ବିଂଶ ଶତକର ଆଦ୍ୟ ପାଦରେ ତାଙ୍କର ଏ ଧରଣର ପ୍ରବନ୍ଧ ପ୍ରକୃତରେ ତାଙ୍କର ସଂସ୍କାରନିଷ୍ଠା ଓ ଦୂରଦୃଷ୍ଟିର ପରିଚାୟକ । ସଂପ୍ରତି ବିବାହକୁ କେନ୍ଦ୍ର କରି ଯେଉଁସବୁ ସମସ୍ୟା ସୃଷ୍ଟି ହେଉଛି, ସେ କାଳରେ ଗୋପବନ୍ଧୁ ଏ ସବୁ ଚିନ୍ତାକରି ଏଥିରେ ଆଲୋଚନା କରିଥିଲେ । ଏବେ ସୁଦ୍ଧା ପ୍ରବନ୍ଧଟିର ପ୍ରାସଙ୍ଗିକତା ରହିଛି । 'ମୁକୁର' ପତ୍ରିକାରେ ନୀଳକଣ୍ଠ ଦାସ ତାଙ୍କର ପ୍ରସିଦ୍ଧ ସଂସ୍କାରଧର୍ମୀ ପ୍ରବନ୍ଧ 'ମୋ ଜାତି', 'ଜାତି' ପ୍ରକାଶ କରିଥିଲେ । 'ଜାତି' ପ୍ରବନ୍ଧରେ ସେ ବ୍ରାହ୍ମଣ ସମାଜରେ ରହିଥିବା କୁସଂସ୍କାର, ଅନ୍ଧବିଶ୍ୱାସ ଓ ସ୍ୱାର୍ଥପରତ୍ୱ ଚଳଣି ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ । ସାମାଜିକ ବିଧିବ୍ୟବସ୍ଥାରେ ରହିଥିବା ପ୍ରଥାସିଦ୍ଧ ବିଶ୍ୱାସକୁ ଦୂର କରି ଜୀବନରେ ବାସ୍ତବ ମୂଲ୍ୟାୟନ ପାଇଁ 'ଜାତି' ଓ 'ମୋ ଜାତି' ପ୍ରବନ୍ଧ ଦୁଇଟିର ଆହ୍ୱାନ ଥିଲା ଯୁଗୋପଯୋଗୀ । ଏହି ପ୍ରବନ୍ଧ ଦୁଇଟି ମୁକୁରରେ ପ୍ରକାଶିତ ହେବା ପରେ ପରେ ତତ୍କାଳରେ ଏକ ସାମାଜିକ ପ୍ରତିକ୍ରିୟା ବ୍ରାହ୍ମଣ ସମାଜରେ ସୃଷ୍ଟି ହୋଇଥିଲା । ଶ୍ରୀବତ୍ସ ପଣ୍ଡାଙ୍କ 'ଯୁବତୀ ବିବାହ' ପରି ସଂସ୍କାରଧର୍ମୀ ପ୍ରବନ୍ଧକୁ ମଧ୍ୟ ମୁକୁର ସମ୍ପାଦକ ସାହସର ସହିତ ଛାପିଥିଲେ । ରକ୍ଷଣଶୀଳତା ବିରୁଦ୍ଧରେ ସଂଗ୍ରାମ କରି ଏକ ବାସ୍ତବ ରୁଚିଶୀଳ ସମାଜ ଗଠନ ଅଭିମୁଖ୍ୟ ନେଇ ଏ ଧରଣର ପ୍ରବନ୍ଧଗୁଡ଼ିକ ମୁକୁରରେ ପ୍ରକାଶିତ ହୋଇଥିଲା ।

ଜାତୀୟ ଜାଗରଣର ସ୍ୱର ମୁକୁରରେ ପ୍ରକାଶିତ ଲେଖାମାନଙ୍କରେ ବେଶ୍ ସୁଲଭ । ଏକ ପକ୍ଷରେ ଉତ୍କଳ ଗୌରବ ମଧୁସୂଦନଙ୍କ ଜାତୀୟ ଜୀବନର ବିକାଶ ପାଇଁ ଆହ୍ୱାନ ଓ ଅପର ପକ୍ଷରେ ସତ୍ୟବାଦୀ ବନବିଦ୍ୟାଳୟର ସ୍ୱଦେଶପ୍ରେମ ଭାବନା 'ମୁକୁର'ରେ ପ୍ରକାଶିତ ଲେଖାମାନଙ୍କରେ ପ୍ରତିଫଳିତ ହୋଇଥିଲା । ସାମଗ୍ରିକ ଭାବରେ ମୁକୁରରେ ମଧ୍ୟ ମଧୁବାବୁଙ୍କ ଜାତୀୟ ଜାଗରଣ ମୂଳକ କବିତାମାନ ବାହାରୁଥିଲା । ଯେମିତି, ତାଙ୍କର 'ଜାତୀୟ ଗୀତ' ମୁକୁର ପତ୍ରିକାର ଦଶମବର୍ଷ, ସପ୍ତମ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ସେ କବିତାଟି ଥିଲା ଉତ୍କଳ ସମ୍ମିଳନୀରେ ଗାନ କରାଯାଉଥିବା ଉଦ୍‌ବୋଧନ ମୂଳକ କବିତା ମଧ୍ୟରୁ ଅନ୍ୟତମ । ସମ୍ମିଳନୀର ବିବରଣୀମାନଙ୍କୁ ଯତ୍ନର ସହିତ ପ୍ରବନ୍ଧ ଆକାରରେ ପ୍ରକାଶ କରିବାରେ ବ୍ରଜସୁନ୍ଦର ବେଶ୍ ଯତ୍ନଶୀଳ ଥିଲେ । ସେ ନିଜେ ମଧ୍ୟ 'ଶ୍ରୀ' 'ଶ୍ରୀ ପଲ୍ଲିବାସୀ' ଏହିପରି ଛଦ୍ମ ନାମରେ ମୁକୁରରେ ଉଦ୍‌ବୋଧନ ମୂଳକ ଜାତୀୟ କବିତାମାନ ରଚନା କରିଛନ୍ତି । 'ଶ୍ରୀ ପଲ୍ଲିବାସୀ' ଛଦ୍ମନାମରେ ତାଙ୍କର ଜନ୍ମଭୂମି

କବିତାଟି ଯେପରି ଭାବବୋଧକ, ସେହିପରି ଅନ୍ତରସ୍ପର୍ଶୀ । ସେ କବିତାର କିୟଦଂଶ ଥିଲା ଏହିପରି ;

"ସାରଳାଦାସ ଜନମି ଯେ ଦେଶେ ଗାଇଲା ମହାଭାରତ-ଗୀତ
ପ୍ରଚାରିଲା ଯହିଁ ଦୀନକୃଷ୍ଣ ଧର୍ମର ମହିମା ଭକ୍ତି ପ୍ରୀତ,
ଲାବଣ୍ୟବତୀର କବି ଯେ ଦେଶେ ଢାଳିଲା ରସର ଅମୃତ-ହ୍ରଦ,
ମୋହିଲା ଯାହାର ସଙ୍ଗୀତ ସୁଧା ସକଳ ପ୍ରେମେ ଭକ୍ତ ଛୁଦ୍ର ହୃଦ ।
ସେହି ଦେଶ ମୋର ଜନ୍ମଭୂମି, ସେହି ଦେଶ ମୋର ଧ୍ୟାନ, ଶକ୍ତି,
ସେହି ଦେଶ ମୋର ଧର୍ମ, କର୍ମ, ଶିକ୍ଷା, ଦୀକ୍ଷା, ଜ୍ଞାନ, ଭକ୍ତି ।"

ବ୍ରଜସୁନ୍ଦର ସମବାୟ ସମିତି, ପଲ୍ଲୀବିକାଶ ଯୋଜନା, ଉତ୍କଳର ଐତିହ୍ୟ ଓ ସଂସ୍କୃତି ସମ୍ପର୍କୀୟ ଆଲୋଚନା ଓ ବିଭିନ୍ନ ମନୀଷୀଙ୍କ ଜୀବନୀ ଏଥିରେ ପ୍ରକାଶ କରୁଥିଲେ । ଜଗବନ୍ଧୁ ସିଂହଙ୍କ ପ୍ରାଚୀନ ଉତ୍କଳର କିୟଦଂଶ ଏଥିରେ ଆତ୍ମପ୍ରକାଶ କରିଥିଲା ।

ମୁକୁର ପତ୍ରିକା ଓଡ଼ିଆ ଉପନ୍ୟାସ ସାହିତ୍ୟକୁ ଲୋକପ୍ରିୟ କରିବାରେ ହୋଇଥିଲା ଯଥେଷ୍ଟ ସହାୟକ । ମୁକୁର ପତ୍ରିକାରେ ଲେଖକମାନେ ଧାରାବାହିକ ଭାବରେ ଉପନ୍ୟାସମାନ ଲେଖୁଥିଲେ । ପରେ ସେଗୁଡ଼ିକ 'ମୁକୁର ଉପନ୍ୟାସ ଗ୍ରନ୍ଥମାଳା' ଆକାରରେ ମୁକୁର ପ୍ରେସ୍‌ରେ ଛପା ହୋଇ ଆତ୍ମପ୍ରକାଶ କରୁଥିଲା । ଉପନ୍ୟାସ ପ୍ରତି ବ୍ରଜସୁନ୍ଦରଙ୍କର ଥିଲା ସ୍ୱତନ୍ତ୍ର ଶ୍ରଦ୍ଧା । ଉପନ୍ୟାସରେ ଜୀବନର ବାସ୍ତବ ରୂପ ବିଭିନ୍ନ ଚରିତ୍ର ମାଧ୍ୟମରେ ଯେପରି ପ୍ରକଟିତ ହୋଇପାରେ, ସାହିତ୍ୟର କୌଣସି ବିଭାଗରେ ସେପରି ସମ୍ଭବ ନୁହେଁ । ଏଥିପାଇଁ ଉପନ୍ୟାସ ସାହିତ୍ୟର ସେ ଥିଲେ ମୁଗ୍ଧ ପ୍ରାବକ । ତାଙ୍କର ଆନ୍ତରିକତା ଫଳରେ ଯେଉଁସବୁ ଉପନ୍ୟାସ ଲୋକ ଲୋଚନକୁ ଆସିଥିଲା, ସେଗୁଡ଼ିକ ମଧ୍ୟରେ ଚିନ୍ତାମଣି ମହାନ୍ତିଙ୍କ 'ବୁଲା ଫକୀର', କୁନ୍ତଳା କୁମାରୀ ସାବତଙ୍କ 'କାଳୀବୋହୂ', 'ପରଶମଣି', ରାଜକିଶୋର ମହାନ୍ତିଙ୍କ 'ଆଦର୍ଶ କନ୍ୟା', ଗୋବିନ୍ଦ ତ୍ରିପାଠୀଙ୍କ 'ପ୍ରମାଦ', କାମିନୀ କିଶୋର ଘୋଷଙ୍କ 'ଅମ୍ବା', ଚିନ୍ତାମଣି ଆଚାର୍ଯ୍ୟଙ୍କ 'ସଫଳ ସ୍ୱପ୍ନ', ଦୟାନିଧି ମିଶ୍ରଙ୍କ 'ମାନ ଭଞ୍ଜନ' ପ୍ରଭୃତି ପ୍ରଧାନ । ଓଡ଼ିଆ ଉପନ୍ୟାସକୁ ପାଠକ ନିକଟରେ ବିଶେଷ ଆଦୃତି କରାଇବାରେ 'ମୁକୁର' ପତ୍ରିକାର ଏଧରଣର ଚେଷ୍ଟା ପ୍ରଶଂସନୀୟ ।

'ମୁକୁର' ପତ୍ରିକା କବିତା ପ୍ରକାଶରେ ବହୁମାତ୍ରାରେ ଥିଲା ଉଦାସୀନ । ଏଥିରେ ସୁନିର୍ବାଚିତ କବିତାମାନ ପ୍ରକାଶିତ ହେଉଥିଲା । ଜାତୀୟ ଜୀବନକୁ

ଉଦ୍‌ବୋଧନ ଦେଇଥିଲା କବିତାର ସଂଖ୍ୟା ମୁକୁରରେ ପ୍ରକାଶିତ ଅନ୍ୟ କବିତାଠାରୁ ଯଥେଷ୍ଟ ଅଧିକ ଥିଲା । ଦାର୍ଶନିକ ଭାବ ଆଧାରିତ କ୍ଷୁଦ୍ର ଅଥଚ ଭାବଗର୍ଭକ କବିତାମାନ ଏଥିରେ ମଝିରେ ମଝିରେ ଦେଖିବାକୁ ମିଳୁଥିଲା । ଗୋପବନ୍ଧୁ, ନୀଳକଣ୍ଠ, ପଦ୍ମଚରଣ ପଟ୍ଟନାୟକ, ଚନ୍ଦ୍ରଶେଖର ନନ୍ଦ, କାମପାଳ ମିଶ୍ର, ଗୋଦାବରୀଶ ମିଶ୍ର, ଲକ୍ଷ୍ମୀକାନ୍ତ ମହାପାତ୍ର, ନାରାୟଣ ମୋହନ ଦେଓ ପ୍ରମୁଖଙ୍କ କବିତା ଏଥିରେ ପ୍ରକାଶିତ । ଫକୀର ମୋହନଙ୍କର କେତେକ କବିତା ମଧ୍ୟ ଏଥିରେ ଦେଖିବାକୁ ମିଳେ । 'ଶ୍ରୀ', 'ଶ୍ରୀ ପଲ୍ଲୀବାସୀ', 'ଶ୍ରୀଯୁକ୍ତ ଶ୍ରୀ ଅ' ଏହିପରି ଛଦ୍ମ ନାମରେ କେତେକ କବିତା ମୁକୁର ପୃଷ୍ଠାରେ ପ୍ରକାଶ ପାଇଛି । ଏହି ଛଦ୍ମ ନାମରେ ରଚିତ କବିତାଗୁଡ଼ିକ ବ୍ରଜସୁନ୍ଦରଙ୍କ ରଚନା ରୂପେ କେତେକ ଅନୁମାନ କରନ୍ତି । ମୁକୁରରେ ପ୍ରକାଶିତ କବିତାଗୁଡ଼ିକର ଆକାର ବେଳେବେଳେ ଅତି ସଂକ୍ଷିପ୍ତ ଥିଲା । ଏ ଧରଣର ସଂକ୍ଷିପ୍ତ କବିତାର ରଚୟିତା ଭାବେ ଚନ୍ଦ୍ରଶେଖର ନନ୍ଦଙ୍କ କୃତିତ୍ୱ ଅଭିନନ୍ଦନୀୟ । ଏଠାରେ ତାଙ୍କର ଏକ ସଂକ୍ଷିପ୍ତ କବିତା 'କୀର୍ତ୍ତି' ଦେଖନ୍ତୁ ;

"ମରଣର ପରେ ଯେତେ କାଳଯାଏ
ଏହି ନର ବଞ୍ଚିଥାଏ,
ଯେତେ କାଳ ଯାକ କୀର୍ତ୍ତି ଗୀତ ତା'ର
ଲୋକ ମୁଖେ ଗୀତ ହୁଏ ।"

ଗୀତଧର୍ମୀ କବିତା ପ୍ରକାଶନ ଉପରେ ଏହି ପତ୍ରିକା ଗୁରୁତ୍ୱ ଦେଉଥିଲା । ସ୍ୱାଗତଗୀତିକା ଓ ଶୋକଗୀତିକାମାନ ବହୁ ପରିମାଣରେ ମୁକୁର ପୃଷ୍ଠାରେ ସ୍ଥାନ ଲାଭ କରିଥିଲା । ପରଲୋକଗତ କବି, ଦେଶ ସେବକ ଓ ମହାପୁରୁଷମାନଙ୍କ ପ୍ରତି ଅଶ୍ରୁତର୍ପଣ କରିବା ଏହି ପତ୍ରିକାର ଏକ ନୀତିଗତ କର୍ତ୍ତବ୍ୟ ଥିଲା କହିଲେ ଭୁଲ ହେବନାହିଁ ।

'ଉତ୍କଳ ପ୍ରଭା' ପରେ 'ମୁକୁର' ହେଉଛି ଦ୍ୱିତୀୟ ସାହିତ୍ୟ ପତ୍ରିକା, ଯାହା ଲେଖକମାନଙ୍କୁ ସେମାନଙ୍କ ଲେଖା ସକାଶେ ଯତ୍କିଞ୍ଚିତ୍ ପାରିତୋଷିକ ପ୍ରଦାନ କରିଥିଲା । ଏ ସମ୍ପର୍କରେ 'ଲେଖକ ଓ ଗ୍ରାହକମାନଙ୍କ ପ୍ରତି' ଶିରୋନାମାରେ ବ୍ରଜସୁନ୍ଦର ଦାସ ଏକ ସୁନ୍ଦର ବିଜ୍ଞାପନ ପ୍ରକାଶ କରୁଥିଲେ । ତାହା ଥିଲା ଏହିପରି, "ମୁକୁରର ଲେଖକମାନଙ୍କ ମୌଳିକ ପ୍ରବନ୍ଧ, ପଦ୍ୟ, ଉପନ୍ୟାସ ଓ ~~କମ୍ପନ୍ଦିନ୍ନା~~ ନିମନ୍ତେ ପୃଷ୍ଠା ପ୍ରତି ଚାରିଅଣା ଓ ଅନୁବାଦ ବା ଅବଲମ୍ବନରେ ଲିଖିତ ବିଷୟ ପ୍ରତି ଦୁଇଅଣା ହିସାବରେ ପୁରସ୍କାର ଦିଆଯିବ । ଯେଉଁମାନଙ୍କର ପ୍ରବନ୍ଧ ମୁକୁରରେ ସ୍ଥାନ ପାଇବ, ସେହିମାନେ କେବଳ ପୁରସ୍କାର ପାଇବେ ।" ପୁଣି

ମୁକୁରରେ ପ୍ରକାଶିତ ଲେଖାଗୁଡ଼ିକୁ ପୁସ୍ତକ ଆକାରରେ ଛପାଇବା ଉପରେ ବ୍ରଜସୁନ୍ଦର ଦାସ ସର୍ବପ୍ରଥମେ ଉଦ୍ୟମ କରିଥିଲେ ।

ବ୍ରଜସୁନ୍ଦରଙ୍କର ଏକ ସାହିତ୍ୟିକ ରୁଚିବୋଧ ଥିଲା । ମୁକୁର ପ୍ରଥମେ ପାଣ୍ଡବର୍ଦ୍ଧିନୀ ମିଶନ ପ୍ରେସ୍‌ରେ ଆତ୍ମପ୍ରକାଶ କରିଥିଲା । ଯେତେବେଳେ ଏହାର ଏକ ସ୍ୱତନ୍ତ୍ର ପ୍ରେସ୍ ହେଲା, ସେତେବେଳେ ନୂଆ ଅକ୍ଷରରେ ମୁକୁର ମର୍ଯ୍ୟାଦାପୂର୍ଣ୍ଣ ଢଙ୍ଗରେ ନିର୍ଭୁଲ ଭାବରେ ଛପା ହୋଇ ବାହାରିଲା । ଭଲ ଅକ୍ଷର ସହାରେ ମୁକୁର ପ୍ରେସ୍‌ର ଏକ ଟାଇପ୍ ଫାଉଣ୍ଡ୍ରୀ ଥିଲା । ମୁକୁର ପ୍ରେସ ରୁଚିଶୀଳ ମୁଦ୍ରଣ ପରିପାଟୀ ପ୍ରସ୍ତୁତରେ ଅପ୍ରତିଦ୍ୱନ୍ଦ୍ୱୀ ଥିଲା କହିଲେ ଯଥାର୍ଥ ହେବ । ମୁକୁର ପ୍ରେସ୍‌ର ଏକ ନିଜସ୍ୱ ପୁସ୍ତକାଳୟ ଥିଲା । ଏଥିରେ ମୁକୁର ପ୍ରେସ୍‌ରୁ ପ୍ରକାଶିତ ବିଭିନ୍ନ ପୁସ୍ତକ ବିକ୍ରୟ ହେଉଥିଲା । ଯେଉଁସବୁ ପୁସ୍ତକ ମୁକୁର ପ୍ରେସ୍‌ରୁ ପ୍ରକାଶିତ ହୋଇଥିଲା, ସେଗୁଡ଼ିକ ମଧ୍ୟରେ ସାମନ୍ତ ଚନ୍ଦ୍ରଶେଖର ସିଂହସାମନ୍ତଙ୍କ 'ସିଦ୍ଧାନ୍ତ ଦର୍ପଣ' ଫକୀରମୋହନଙ୍କ 'ଲଛମା', ଅଭିମନ୍ୟୁ ସାମନ୍ତସିଂହାରଙ୍କ 'ସୁଲକ୍ଷଣା' କାବ୍ୟ, ପ୍ରେମିକ ପ୍ରେମିକା ( ସେକସ୍‌ପିଅରସ୍ଙ୍କ ଗଳ୍ପ ) ମୁଦ୍ରାରାକ୍ଷସ ନାଟକ ( ମୃତ୍ୟୁଞ୍ଜୟ ରଥଙ୍କ ଦ୍ୱାରା ଅନୁଦିତ ) ପ୍ରଭୃତି ପ୍ରଧାନ । ସେ ମୁକୁର ପ୍ରେସ୍‌ରେ ପ୍ରସିଦ୍ଧ ଇଂରେଜୀ ଗ୍ରନ୍ଥମାନଙ୍କରୁ ଓଡ଼ିଶାର ଶିକ୍ଷା, ସଂସ୍କୃତି ଓ ଇତିହାସ ସମ୍ପର୍କିତ ଅଂଶଗୁଡ଼ିକୁ ସଂକଳନ କରି ପ୍ରକାଶ କରୁଥିଲେ ।

ବ୍ରଜସୁନ୍ଦର ମୁକୁର ସମ୍ପାଦନା ସହିତ ନିଜେ ମଧ୍ୟ ସମୟେ ସମୟେ ଲେଖୁଥିଲେ । ଗଦ୍ୟ, ପଦ୍ୟ ଉଭୟରେ ତାଙ୍କର ଦକ୍ଷତାର ପରିଚୟ ମିଳେ । ତାଙ୍କ ରଚିତ ଗଦ୍ୟ ଲେଖାମାନଙ୍କ ମଧ୍ୟରେ 'ମାଧବୀ ଦାସୀ' ଏକ ଉଚ୍ଚକୋଟୀର ପ୍ରବନ୍ଧ । ତାଙ୍କ କବିତାଗୁଡ଼ିକର ସାଙ୍ଗୀତିକତା ଅପୂର୍ବ । ତାଙ୍କର କବିତାରେ ଆଧ୍ୟାତ୍ମିକ ଭାବଚେତନାର ପୂର୍ଣ୍ଣ ସଙ୍କେତ ଅନୁଭୂତ ହୁଏ । ସେ ଶିଶୁମାନଙ୍କ ଆତ୍ମବିକାଶକ୍ଷମ ଶକ୍ତି ଜାଗ୍ରତ ପାଇଁ କେତେଗୁଡ଼ିଏ ଶିଶୁକବିତା ରଚନା କରିଛନ୍ତି । 'ଅକ୍ଷର ପରିଚୟ' ତାଙ୍କର ଏ ଧରଣର ଏକ ପ୍ରସିଦ୍ଧ ପୁସ୍ତକ । ଏ କବିତା ଗ୍ରନ୍ଥଟିର ଭାବ ଯେପରି ଉଚ୍ଚ ସ୍ତରର, ଭାଷା ସେହିପରି ସାବଲୀଳ । ଯେଉଁ ସବୁ ନୀତିଶିକ୍ଷା ସୂକ୍ତି ଆକାରରେ ସଂସ୍କୃତ, ଇଂରାଜୀରେ ରହିଛି, ସେଇ ସବୁ ନୈତିକ ଉପଦେଶାବଳୀର ଆଧାରରେ ଅକ୍ଷର ପରିଚୟ ରଚିତ । ଜୀବନ, ପାଣ୍ଡିତ୍ୟ ଓ କର୍ମ ସମ୍ପର୍କରେ ସେଥିରେ ସେ ଲେଖିଛନ୍ତି—

"ପ୍ରଗଲ୍‌ଭତା ନୁହେଁ ପାଣ୍ଡିତ୍ୟ ଲକ୍ଷଣ
ବଢାସ ନୁହିଁଇ ବଡ଼ଙ୍କର ଚିହ୍ନ
କାର୍ଯ୍ୟହୀନ ବୃଥା ବାହ୍ୟ ଆସ୍ଫାଳନ

ନୁହଁଇ ଇପ୍‌ସିତ ଲାଭର କାରଣ ।"
ପୁଣି ସେ ପୁରୁଷର ଦୂଷଣ ଓ ନାରୀର ଭୂଷଣ ସମ୍ପର୍କରେ ଲେଖିଛନ୍ତି—
"ଲଜ୍ଜା ଅଟେ ନାରୀ ପ୍ରଧାନ ଭୂଷଣ
ମିଥ୍ୟା, ଚୌର୍ଯ୍ୟ, ହିଂସା ପୁରୁଷ ଦୂଷଣ ।"

ଶୂନ୍ୟ ମନ, ଶୂନ୍ୟ ଆଳୟକୁ ସେ ସବୁ ଅନର୍ଥର କାରଣ ରୂପେ ଦର୍ଶାଇ କବିତାରେ ଲେଖିଛନ୍ତି—

"ଶୂନ୍ୟ ଘରେ ହୁଏ ଭୌତିକ ବିହାର
ଶୂନ୍ୟ ମନ ଖୋଜେ ସଇତାନ ଗାର
ଆଜି ମହୋତ୍ସବ କାଲି କାନ୍ଦ ଗୋଳ
ନ ବୁଝି ମାନବେ ହେଉଛନ୍ତି ଭୋଳ ।"

ଶିଶୁମାନଙ୍କ ମନରେ ନୈତିକ ମୂଲ୍ୟବୋଧ, ଆଦର୍ଶ ଭାବନା ଓ ଧର୍ମ ପାଇଁ ଆଗ୍ରହ ସୃଷ୍ଟି କରିବାରେ 'ଅକ୍ଷର ପରିଚୟ'ର କବିତାଗୁଡ଼ିକ ଗୁରୁତ୍ୱପୂର୍ଣ୍ଣ ।

ବ୍ରଜସୁନ୍ଦର ଦାସ 'ମୁକୁର' ସାହିତ୍ୟ ପତ୍ରିକା ବ୍ୟତୀତ ଇଂରାଜୀରେ 'The Oriya' ନାମରେ ଏକ ସାପ୍ତାହିକ ପତ୍ରିକାର ସମ୍ପାଦନା କରୁଥିଲେ । ଏହି ପତ୍ରିକାଟି ୧୯୧୮ ମସିହାରୁ ୧୯୨୨ ମସିହା ପର୍ଯ୍ୟନ୍ତ ନିୟମିତ ପ୍ରକାଶ ପାଉଥିଲା । ପରେ ୧୯୩୦ ମସିହାରେ ସେ 'ସତ୍ୟ ସମାଚାର' ନାମରେ ସମ୍ବାଦ ଓ ସାହିତ୍ୟ ଧର୍ମୀ ପତ୍ରିକା ପ୍ରକାଶ କରିଥିଲେ । 'ମୁକୁର' ପତ୍ରିକା ପରି ଏଗୁଡ଼ିକ ବିଶେଷ ଜନପ୍ରିୟ ହୋଇପାରି ନଥିଲା ।

ବ୍ରଜସୁନ୍ଦର ଦାସ ସାହିତ୍ୟିକ ଭାବରେ ନିଜର କୃତିତ୍ୱର ପରିଚୟ ବିଶେଷରୂପେ ଦେଇ ପାରିନଥିଲେ ସିନା ସେ ଥିଲେ ସତ୍ ସାହିତ୍ୟର ପ୍ରଚାରକ । ସେ ତାଙ୍କର ସାହିତ୍ୟିକ ଅଭିରୁଚି ସମ୍ପର୍କରେ ସୂଚନା ଦେଇ ମୁକୁର ପତ୍ରିକାର 'ସତ୍ ସାହିତ୍ୟର ପ୍ରଚାର' ଶିରୋନାମାରେ ଲେଖିଥିଲେ, "ଆମ୍ଭମାନଙ୍କ ଦେଶରେ ପାଠକ-ସମାଜରେ ଅର୍ଦ୍ଧଶିକ୍ଷିତ ଲୋକଙ୍କ ସଂଖ୍ୟା ବେଶି । ସେମାନେ ନିଜ ରୁଚି ଅନୁସାରେ ବହି କିଣୁଛନ୍ତି ଓ କିଣିବେ ; କିନ୍ତୁ ଯେଉଁମାନେ ଶିକ୍ଷିତ ବୋଲି ଆଜି ସମାଜରେ ଆଦୃତ, ସେମାନେ ସାହିତ୍ୟର 'ସ' ଅକ୍ଷର ସହିତ ସମ୍ବନ୍ଧ ରଖନ୍ତି ନାହିଁ । ❋ ❋ ❋ ମାତୃଭୂମି ଓ ମାତୃଭାଷା ପ୍ରତି ଯେ ସେମାନଙ୍କ ଗୋଟିଏ କର୍ତ୍ତବ୍ୟ ଅଛି, ଏହା ଅନେକ ସେମାନେ ପାଶୋରି ପକାନ୍ତି । ❋ ❋ ❋ ଯେଉଁ ଜାତିର ଦ୍ୱାହି ଦେଇ ସେମାନେ ଉନ୍ନତ ଆସନରେ ଅଧୀନ ହୋଇଥାନ୍ତି, ସେହି ଜାତିକୁ ଏକାବେଳେକେ ଭୁଲିଯିବା କୃତଘ୍ନତା ଛଡ଼ା ଆଉ କିଛି ନୁହେଁ । ଦେଶରେ ଯେ ସତ୍ ସାହିତ୍ୟର ପ୍ରଚାର ହୋଇପାରୁନାହିଁ, ସେଥିପାଇଁ ଏହି

ଶିକ୍ଷିତ ସଂପ୍ରଦାୟ ହିଁ ଦାୟୀ ।" ( ମୁକୁର ୧୮ଶ ଭାଗ/୯ମ-୧୦ସଂଖ୍ୟା ) ଏଥିରୁ ବ୍ରଜସୁନ୍ଦରଙ୍କ ପ୍ରାଣ ସାହିତ୍ୟ ପାଇଁ କେତେ ଚିନ୍ତିତ ଥିଲା, ସହଜରେ ଅନୁମାନ କରିଯାଇପାରେ । ସେ ସାହିତ୍ୟକୁ ସର୍ବଦା ଗଠନମୂଳକ ମନୋଭାବ ନେଇ ଦେଖୁଥିଲେ । ତାଙ୍କ ପାଇଁ ସାହିତ୍ୟ ହେଉଛି ଜାତୀୟ ଜୀବନର ନିୟାମକ, ଜାତୀୟ ସଂହତିର ମାଧ୍ୟମ ଓ ଜୀବନର ଆତ୍ମିକ ବିକାଶର ପ୍ରକୃଷ୍ଟ କ୍ଷେତ୍ର ।

ଆଜୀବନ ସାହିତ୍ୟ ସେବାରେ ସମର୍ପିତ ବ୍ରଜସୁନ୍ଦର ଇହଲୋକରୁ ଜୁନ୍ ନଅ ତାରିଖ ୧୯୬୪ ମସିହାରେ ବିଦାୟ ନେଇଥିଲେ । ତାଙ୍କ ପରି ଯାବଜ୍ଜୀବନ ସେବକ ଏବେ ଦୁର୍ଲ୍ଲଭ । ସଂକୀର୍ଣ୍ଣତାର ଊର୍ଦ୍ଧ୍ୱରେ ଥାଇ ସେ ଯେପରି ତାଙ୍କର 'ମୁକୁର' ପତ୍ରିକାରେ ସବୁ ଶ୍ରେଣୀର ଲେଖକଙ୍କ ଲେଖାମାନ ପ୍ରକାଶ କରି ତରୁଣ—ପ୍ରବୀଣ ସମସ୍ତଙ୍କୁ ଉତ୍ସାହିତ କରିଛନ୍ତି, ତାହା ତାଙ୍କର ସୁମହତ୍ ସ୍ୱଭାବର ଯଥାର୍ଥ ନିଦର୍ଶନ । ପରିଶେଷରେ ତାଙ୍କର ସାହିତ୍ୟ ପ୍ରୀତି ସଂପର୍କରେ ନାୟିକବି ବିଦ୍ୟୁତ୍ ପ୍ରଭା ଦେବୀଙ୍କ 'ପ୍ରିୟଦର୍ଶୀ ବ୍ରଜସୁନ୍ଦର' କବିତାର କିୟଦଂଶ ଏଠାରେ ଉଦ୍ଧାର କରିବା ସମୀଚୀନ ହେବ ।

"ଜାତିର ଉନ୍ନତି କେତେ
ପ୍ରତିଫଳେ ସାହିତ୍ୟ-ଦର୍ପଣେ,
ପ୍ରତ୍ୟକ୍ଷେ ତା' ଦେଖାଇଲ
'ମୁକୁର'ର ଶୁଭ ସଂପାଦନେ ।
ନବୀନ ଉତ୍ସାହେ ମାତି
ଫଳେ ତା'ର ଅସଂଖ୍ୟ ତରୁଣ
ନବଯୁଗେ ନବାଲୋକେ
ସାରି ଦେଲେ କଳ ସ୍ତବକରଣ ।
ପ୍ରିୟଭାଷେ ସର୍ବଜନେ
ସମଭାବେ ବିତରି ସେନେହ
କରୁଥିଲ ପ୍ରୋତ୍ସାହିତ
ବାଣୀସେବା ପାଇଁ ଅହରହ ।
ପଞ୍ଚତ୍ରିଂଶ୍ୟ ରୂପେ ତୁମେ
ଅନୁସରି 'ମଧୁ' ମଧୁପଥ,
ଉତ୍କଳୀ ଏକୀକରଣେ
କରିଥିଲ ଜୀବନର ବ୍ରତ ।"

—※—

# ବଶିଷ୍ଟ ଗବେଷକ ମନମୋହନ ଚକ୍ରବର୍ତ୍ତୀ

ଯେଉଁ କେତେଜଣ ଗବେଷକ ଓଡ଼ିଆ ଭାଷା, ସଂସ୍କୃତ, ଇତିହାସ ଓ ସାହିତ୍ୟ ଗବେଷଣାରେ ଉନବିଂଶ ଶତକରେ ମନୋନିବେଶ କରିଥିଲେ, ସେମାନଙ୍କ ମଧ୍ୟରେ ବରେଣ୍ୟ ଗବେଷକ ମନମୋହନ ଚକ୍ରବର୍ତ୍ତୀ ବିଶେଷ ସ୍ମରଣୀୟ । ସେ ଥିଲେ ଏକାଧାରରେ ସଂସ୍କୃତପ୍ରେମୀ, ପ୍ରାଚ୍ୟବିଦ୍ୟାବିଶାରଦ, ଐତିହାସିକ, ସୁଧୀ ସାହିତ୍ୟ ସମୀକ୍ଷକ ଓ ନବଚିନ୍ତାଧାରାର ପୃଷ୍ଠପୋଷକ । ଓଡ଼ିଶାର ସଂସ୍କୃତି, ଇତିହାସ, ସାହିତ୍ୟ, ସାମାଜିକ ଜୀବନ ଓ ପ୍ରାଚୀନ ଶାସ୍ତ୍ର ଅନୁଶୀଳନରେ ତାଙ୍କର ନିଷ୍ଠାପର ସାଧନା, ଏବେ ସୁଦ୍ଧା ଗବେଷକମାନଙ୍କ ପାଇଁ ପ୍ରେରଣାର ଅସରନ୍ତି ଉତ୍ସ ହୋଇ ରହିଛି ।

ମନମୋହନ ଚକ୍ରବର୍ତ୍ତୀ ବଙ୍ଗଳାର ୨୪ ପ୍ରଗଣା ଜିଲ୍ଲାର ବାରାସତ ଅନ୍ତର୍ଗତ କାଠୋର ଗ୍ରାମରେ ୧୮୬୩ ମସିହା ଅକ୍ଟୋବର ୧୬ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ସେ ସମୟରେ ଅଧିକାଂଶ ବଙ୍ଗୀୟ ଓଡ଼ିଶାକୁ ସେମାନଙ୍କ କର୍ମଭୂମି ରୂପେ ବାଛି ନେଇଥିଲେ । ମନମୋହନଙ୍କ ପିତା ଦ୍ୱାରକାନାଥ ଚକ୍ରବର୍ତ୍ତୀ ଓଡ଼ିଶାରେ ତାଙ୍କ କର୍ମ-ଜୀବନର ଶେଷ ପର୍ଯ୍ୟନ୍ତ ଅତିବାହିତ କରିଥିଲେ । ଜଣେ ଆଦର୍ଶ ଶିକ୍ଷକ ରୂପେ କାର୍ଯ୍ୟ କରି ସେ ହୋଇଥିଲେ ଓଡ଼ିଶାରେ ବିଶେଷ ପ୍ରଶଂସିତ । ୧୮୭୪ ମସିହାରେ ଦ୍ୱାରକାନାଥ କଟକ ଟ୍ରେନିଂସ୍କୁଲର ସୁପରିଣ୍ଟେଣ୍ଡେଣ୍ଟ ଭାବରେ ଚାକିରୀରୁ ଅବସର ଗ୍ରହଣ କରିଥିଲେ ମଧ୍ୟ, ତାଙ୍କର ଅବସରକାଳୀନ ଶେଷଜୀବନ କଟକ ଠାରେ ଅତିବାହିତ ହୋଇଥିଲା । ମନମୋହନ କଟକ ଠାରେ ବାଲ୍ୟଶିକ୍ଷା ଲାଭ କରିଥିଲେ । ସେ ୧୮୭୮ ମସିହାରେ କଟକ ଜିଲ୍ଲାସ୍କୁଲରୁ ଏଣ୍ଟ୍ରାନ୍ସ ପରୀକ୍ଷାରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇଥିଲେ । ତା' ପରେ ସେ କଟକ କଲେଜ ( ଏବେ ଯାହା ରେଭେନ୍ସା କଲେଜ )ରୁ ୧୮୮୦ରେ ଏଫ୍. ଏ. ଓ ୧୮୮୨ରେ ବି. ଏ. ପାଶ କଲେ । ଯେଉଁ ସମୟରେ ସେ ବି. ଏ. ପାଶ୍ କଲେ, ସେତେବେଳକୁ କଟକ କଲେଜରୁ ଦୁର୍ଗାଚରଣ ସାହୁ, ଗୋପାଳ ବଲ୍ଲଭ ଦାସ

ପ୍ରଭୃତି ଅଳ୍ପ କେତେଜଣ ଗ୍ରାଜୁଏଟ୍ ବାହାରିଥିଲେ । ତତ୍କାଳରେ ମନମୋହନଙ୍କୁ ଏ ପ୍ରକାରେ ଜଣେ ମେଧାବୀ ଛାତ୍ର ଭାବରେ ବେଶ୍ ସୁନାମ ଥିଲା । ସେ ୧୮୮୪ ମସିହାରେ କଲିକତାର 'ଫ୍ରି ଚର୍ଚ୍ଚ ପ୍ରତିଷ୍ଠାନ' (Free Church Institute) ରୁ ଉଦ୍ଭିଦ ବିଜ୍ଞାନରେ କଲିକତା ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାର କରି ଏମ୍. ଏ. ପାଶ୍ କଲେ । ସେ ୧୮୮୬ ମସିହାରେ କଲିକତାର 'ମେଟ୍ରୋପଲିଟାନ୍ ପ୍ରତିଷ୍ଠାନ (Metropolitan Institute) ରୁ ବି. ଏଲ ପାଶ୍ କଲେ । ତା' ପରେ ସେ ସରକାରୀ ଚାକିରିରେ ୨୪ ମାର୍ଚ୍ଚ ୧୮୮୬ରେ ଡେପୁଟି କଲେକ୍ଟର୍ ଭାବରେ କଟକରେ ଯୋଗଦେଲେ । ଏହି ସମୟରେ ସେ ଜିଲ୍ଲାର ପ୍ରାଚୀନ ମନ୍ଦିର, ପ୍ରତ୍ନତାତ୍ତ୍ୱିକ କୀର୍ତ୍ତି ସମ୍ପର୍କରେ ଅନୁଧ୍ୟାନ କରିବାର ସୁଯୋଗ ପାଇଥିଲେ । କଟକରେ ମାତ୍ର ଗୋଟିଏ ବର୍ଷ କଟାଇବା ପରେ ସେ ୧୮୮୭ ମସିହା ମାର୍ଚ୍ଚ ମାସରେ ହେଲେ ପୁରୀକୁ ସ୍ଥାନାନ୍ତରିତ । ସେଠାରେ ସେ ୧୮୯୧ ମସିହା ଡିସେମ୍ବର ମାସ ପର୍ଯ୍ୟନ୍ତ ଡେପୁଟି ମାଜିଷ୍ଟ୍ରେଟ୍ ଭାବେ କାର୍ଯ୍ୟରତ ଥିଲେ । ସେଠାରେ ଥିବାବେଳେ ସେ ନରସିଂହ ଦେବଙ୍କର ଦୁଇଗୋଟି ଓ କୁଳସ୍ତମ୍ଭ ଦେବଙ୍କର ଦୁଇଟି ତାମ୍ରପଟ୍ଟ ଆବିଷ୍କାର କରିଥିଲେ । ବିଭିନ୍ନ ମଠ ସମ୍ବନ୍ଧୀୟ ବିବରଣୀ ସଂଗ୍ରହ, ଜଗନ୍ନାଥ ମନ୍ଦିରରେ ରହିଥିବା ମାଦଳାପାଞ୍ଜି ସମ୍ବନ୍ଧରେ ବ୍ୟାପକ ଅଧ୍ୟୟନ କରିବାର ସୁଯୋଗ ତାଙ୍କୁ ଏଠାରେ ମିଳିଥିଲା । ପୁରୀରୁ ସେ ଡିସେମ୍ବର ୧୮୯୧ ମସିହାରେ ଓଡ଼ିଶାର ଅନ୍ୟ ଏକ ପ୍ରାଚୀନ ତୀର୍ଥସ୍ଥଳୀ ବୈତରଣୀ ତୀର୍ଥ ବିରଜାକ୍ଷେତ୍ର ଯାଜପୁରକୁ ଏସ୍.ଡ଼ି.ଓ. ଭାବେ ବଦଳି ହେଲେ ଓ ସେଠାରେ ସେ ଜୁନ୍ ୧୮୯୭ ମସିହା ପର୍ଯ୍ୟନ୍ତ ରହିଥିଲେ । ଏହି ସମୟରେ ତାଙ୍କର ଖ୍ୟାତି ହୋଇଥିଲା ସର୍ବତ୍ର ପ୍ରସାରିତ । ତାଙ୍କ ପୂର୍ବରୁ ଜି. ସ୍ମିଟନ୍, ବଙ୍କିମ୍ ଚନ୍ଦ୍ରଙ୍କ ପରି ସଂସ୍କୃତିପ୍ରେମୀ ବ୍ୟକ୍ତି ବିଶେଷ ଯାଜପୁରରେ ଏସ୍.ଡ଼ି.ଓ. ଭାବେ କାର୍ଯ୍ୟ କରିଥିଲେ । ସେମାନେ ଯାଜପୁରର ପ୍ରତ୍ନତାତ୍ତ୍ୱିକ କୀର୍ତ୍ତିର ରକ୍ଷଣାବେକ୍ଷଣ ଦିଗରେ ଯେଉଁ ଉଦ୍ୟମ କରିଥିଲେ, ତାକୁ ମନମୋହନ ଚକ୍ରବର୍ତ୍ତୀ ଦେଇଥିଲେ ବାସ୍ତବ ରୂପରେଖ । ଯାଜପୁରର ପ୍ରାଚୀନ କୀର୍ତ୍ତି ସଂରକ୍ଷଣରେ ତାଙ୍କର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ଯାଜପୁରର କୀର୍ତ୍ତିମାନଙ୍କ ସମ୍ପର୍କରେ ଜି. ସ୍ମିଟନ୍ ୨୯ ଏପ୍ରିଲ୍ ୧୮୭୯ ମସିହାରେ ଯେଉଁ ପତ୍ର ଲେଖିଥିଲେ, ଯେଉ ଭିତ୍ତିରେ ସେ ଏହି ପ୍ରାଚୀନ ପୀଠର ଶୁଭସ୍ତମ୍ଭ, ଇନ୍ଦ୍ରାଣୀ, ସପ୍ତମାତୃକା, ଧ୍ୟାନୀ ବୁଦ୍ଧ ମୂର୍ତ୍ତି ପ୍ରଭୃତି ଐତିହାସିକ କୀର୍ତ୍ତିଗୁଡ଼ିକର ସଂରକ୍ଷଣ କରିଥିଲେ । ପ୍ରସଙ୍ଗକ୍ରମେ ଜି. ସ୍ମିଟନ୍ଙ୍କ ଯାଜପୁରର ପ୍ରତ୍ନତାତ୍ତ୍ୱିକ ସଂରକ୍ଷଣ ସମ୍ବନ୍ଧୀୟ ଦୁର୍ଲ୍ଲଭ ବିବରଣୀର କିୟଦଂଶ ଏଠାରେ ଉଦ୍ଧାର କରାଯାଉଅଛି, "Jajpore appears to have been from the earliest times a place of importance,

and to be after pooree, by far the oldest town in the province. ❋ ❋ It is possible that excavations here might bring some ancient remains of value to light. ❋ ❋ It always continued to be atleast an occasional residence of the ruling party both in the time of Kesari and Ganga dynasty." (୧) ବ୍ରହ୍ମାକୁଣ୍ଡ, ତ୍ରିଲୋଚନେଶ୍ୱର ମନ୍ଦିର, ବରାହନାଥ, ଆଖଣ୍ଡଳେଶ୍ୱର ମନ୍ଦିରର ସୁରକ୍ଷା ଦିଗରେ ମନମୋହନ ଚକ୍ରବର୍ତ୍ତୀ ଯଥେଷ୍ଟ ଧ୍ୟାନ ଦେଇଥିଲେ । ତାଙ୍କର ଚେଷ୍ଟାରେ ଏସ୍.ଡି.ଓ. କମ୍ପାଉଣ୍ଡ ମଧ୍ୟରେ ଥିବା ଧ୍ୟାନୀ ବୁଦ୍ଧମୂର୍ତ୍ତି ( ଅଷ୍ଟମ ଶତାବ୍ଦୀ ) ସଂଗୃହୀତ ହୋଇଥିଲା । ଓଡ଼ିଶା ସମ୍ପର୍କରେ ଯେଉଁସବୁ ଗବେଷଣା ନିବନ୍ଧ ତାଙ୍କର ଏସିଆଟିକ୍ ସୋସାଇଟି ପତ୍ରିକାରେ ପ୍ରକାଶିତ, ତାହାହିଁ ସେ ତାଙ୍କର ଯାଜପୁର ରହଣି କାଳରେ ପ୍ରସ୍ତୁତ କରିଥିଲେ । ଯାଜପୁର ତାଙ୍କର ବୌଦ୍ଧିକ ବିକାଶ ପାଇଁ ଥିଲା ପ୍ରଶସ୍ତ କ୍ଷେତ୍ର । ତା' ପରେ ସେ ଗୟା, ମେଦିନୀପୁର, ଶ୍ରୀରାମପୁର, ହୁଗୁଳି, କଲିକତା ପ୍ରଭୃତି ସ୍ଥାନରେ କାମ କରିଥିଲେ । ୧୯୧୪ ମସିହାରେ ତାଙ୍କର ତୀକ୍ଷ୍ଣ ଧୀଶକ୍ତି, କର୍ମନିପୁଣତା ସକାଶେ ସେ ରାୟବାହାଦୁର ଉପାଧିରେ ବିଭୂଷିତ ହୋଇଥିଲେ । ୧୫ ସେପ୍ଟେମ୍ବର ୧୯୧୭ ମସିହାରେ ସେ ଇହଧାମ ତ୍ୟାଗ କରିଥିଲେ ।

ମନମୋହନ ଚକ୍ରବର୍ତ୍ତୀଙ୍କର ଇଂରାଜୀରେ ଲିଖିତ ଚଉତିରିଶ ଗୋଟି ଗବେଷଣାତ୍ମକ ପ୍ରବନ୍ଧ ଜାତୀୟ, ଆନ୍ତର୍ଜାତୀୟ ଖ୍ୟାତିସମ୍ପନ୍ନ ପତ୍ରପତ୍ରିକାରେ ପ୍ରକାଶିତ । Journal of Asiatic Society of Bengal ପତ୍ରିକାରେ ତାଙ୍କର ଅଧିକାଂଶ ଲେଖା ଆତ୍ମପ୍ରକାଶ କରିଥିଲା । ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତି, ଓଡ଼ିଶାର ଭୂଗୋଳ, ପ୍ରତ୍ନତତ୍ତ୍ୱ, ଇତିହାସକୁ ନେଇ ତନ୍ମଧ୍ୟରୁ ଏଗାର ଗୋଟି ପ୍ରବନ୍ଧ ରଚିତ । କାଳିଦାସଙ୍କ ସମୟ, ଐତିହାସିକ ପୃଷ୍ଠଭୂମି, ସାମାଜିକ ପରିବେଶ ଓ କୁମାର ସମ୍ଭବର ଅଷ୍ଟମସର୍ଗ ସମ୍ପର୍କରେ ସେ ତିନିଗୋଟି ପ୍ରବନ୍ଧ ରଚନା କରିଛନ୍ତି । ମିଥିଳା ଓ ବଙ୍ଗଳାର ସାଂସ୍କୃତିକ ସମ୍ପର୍କକୁ ନେଇ ତାଙ୍କର ତିନିଗୋଟି ପ୍ରବନ୍ଧ ଲିଖିତ । ଅବଶିଷ୍ଟ ସତରଗୋଟି ପ୍ରବନ୍ଧ ବଙ୍ଗଳାର

---

(୧) From G. Smeaton Esq, Asst. Collector, Jajpore to Collector of Cuttack No—13, Dated Jajpore 29th April 1869.

ସାହିତ୍ୟ, ସଂସ୍କୃତି, ଭାଷା, ଇତିହାସ, ପ୍ରତ୍ନତତ୍ତ୍ୱ, ଭୂଗୋଳ ପ୍ରଭୃତି ଯାବତୀୟ ବିଷୟ ଉପରେ ଆଧାରିତ । ପୃଷ୍ଠା ଦୃଷ୍ଟିରୁ ବିଚାର କଲେ ସେ ସବୁଠାରୁ ଅଧିକ ପୃଷ୍ଠା ଓଡ଼ିଶା ପ୍ରସଙ୍ଗରେ ଲେଖିଛନ୍ତି । ତାଙ୍କର ଓଡ଼ିଶା ସମ୍ବନ୍ଧୀୟ ଏଗାରଗୋଟି ପ୍ରବନ୍ଧ ଅନ୍ୟ ପ୍ରବନ୍ଧମାନଙ୍କ ତୁଳନାରେ ଅପେକ୍ଷାକୃତ ଦୀର୍ଘ ।

ମନମୋହନଙ୍କ ଓଡ଼ିଶା ସମ୍ପର୍କିତ ପ୍ରବନ୍ଧଗୁଡ଼ିକୁ ଆଲୋଚନାର ସୁବିଧା ଦୃଷ୍ଟିରୁ ଚାରିଭାଗରେ ବିଭକ୍ତ କରାଯାଇପାରେ । (କ) ଓଡ଼ିଶା ଭାଷା ଓ ସାହିତ୍ୟ ବିଷୟକ ପ୍ରବନ୍ଧ । ଏହି ପର୍ଯ୍ୟାୟରେ ତାଙ୍କର ଦୀର୍ଘ ପ୍ରବନ୍ଧ, "Notes on Language and Literature of Orissa"କୁ ବିଚାର କରାଯାଇପାରେ । ଏହା Journal of the Asiatic Society of Bengal 1897 page-317-348 ଓ 1898 page-332-386 ରେ ପ୍ରକାଶିତ । ଏହି ପ୍ରବନ୍ଧଟି ଚାରିଭାଗରେ ବିଭକ୍ତ । ପ୍ରଥମ ଭାଗରେ ଓଡ଼ିଆ ଭାଷା ଓ ବର୍ଣ୍ଣମାଳା ସମ୍ପର୍କରେ ସେ ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା କରିଛନ୍ତି । ଦ୍ୱିତୀୟ ଭାଗରେ ଓଡ଼ିଶାରେ ସଂସ୍କୃତ ଚର୍ଚ୍ଚାର ପରମ୍ପରା ବିଷୟ ଆଲୋଚିତ । ତାଙ୍କ ମତରେ ସମଗ୍ର ଭାରତବର୍ଷରେ ଓଡ଼ିଶା ଥିଲା ସଂସ୍କୃତ ଚର୍ଚ୍ଚାର ଅନ୍ୟତମ ପ୍ରସିଦ୍ଧ ସ୍ଥାନ । ପ୍ରଥମ ଦୁଇଭାଗକୁ ଓଡ଼ିଆ ସାହିତ୍ୟର ସାଂସ୍କୃତିକ ପୃଷ୍ଠଭୂମି କହିବା ଯଥାର୍ଥ ହେବ ।" ଅନ୍ୟ ଦୁଇଟିକୁ ସେ 'ଓଡ଼ିଆ ସଙ୍ଗୀତ ଓ ଧର୍ମାଶ୍ରୟୀ ପଦ୍ୟ ସାହିତ୍ୟ' ଓ 'ପରବର୍ତ୍ତୀ ସମୟର କାବ୍ୟ ସାଧକ' ଏହିପରି ବିଭାଜନ କରିଛନ୍ତି । ଏହି ଶେଷ ଦୁଇଟି ପର୍ଯ୍ୟାୟ ଓଡ଼ିଆ ସାହିତ୍ୟ ଇତିହାସ ଲେଖକ-ମାନଙ୍କ ପାଇଁ ଆଲୋକବର୍ତ୍ତିକା କହିଲେ ଭୁଲ ହେବ ନାହିଁ । ତାଙ୍କର ଆଲୋଚନାତ୍ମକ ଦୃଷ୍ଟିଭଙ୍ଗୀ ଦ୍ୱାରା ପରବର୍ତ୍ତୀ ସମୟରେ ବିଜୟଚନ୍ଦ୍ର ମଜୁମଦାର ବିଶେଷ ରୂପେ ପ୍ରଭାବିତ । ଏ ସମ୍ପର୍କରେ ଡକ୍ଟର ଶ୍ରୀନିବାସ ମିଶ୍ର ସୂଚନା ଦେଇ ଲେଖିଛନ୍ତି, "ଉପେନ୍ଦ୍ର ଭଞ୍ଜଙ୍କ ସମ୍ପର୍କରେ ତାଙ୍କ ଆଲୋଚନାର ଦୃଷ୍ଟିଭଙ୍ଗୀ ଓ ମର୍ମବାଣୀ ଦ୍ୱାରା ପରବର୍ତ୍ତୀ କାଳରେ ବିଜୟଚନ୍ଦ୍ର ମଜୁମଦାର ବହୁ ପରିମାଣରେ ପ୍ରଭାବିତ ।" (୨) ଅଭିମନ୍ୟୁ, ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା, ଭକ୍ତ ଚରଣ ପ୍ରମୁଖଙ୍କ କବିପ୍ରତିଭା ସମ୍ପର୍କରେ ମନମୋହନ ଚକ୍ରବର୍ତ୍ତୀ ଯାହା ଅଭିମତ ପ୍ରଦାନ କରିଛନ୍ତି, ତାକୁ ଅନେକାଂଶ ବିଜୟଚନ୍ଦ୍ର ମଜୁମଦାର ନିଜଭାଷାରେ ଉଲ୍ଲେଖ କରିଛନ୍ତି । ଦୃଷ୍ଟାନ୍ତ ସ୍ୱରୂପ ଏଠାରେ ଅଭିମନ୍ୟୁଙ୍କ ସମ୍ପର୍କିତ ମନ୍ତବ୍ୟକୁ

(୨) ଡକ୍ଟର ଶ୍ରୀନିବାସ ମିଶ୍ର—ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟ ( ୧୯୭୮ ,— ପୃ ୪୩୨ ।

ନଥାଏ । ମନମୋହନ ଚକ୍ରବର୍ତ୍ତୀ ଲେଖିଛନ୍ତି, "In learning and comprehensiveness he is undoubtedly inferior to Upendra but it may be said for Bidagdha Chintamani that no single Oriya poem contains so many examples of rhetorical skill or abstract poetry as this work does." (୩) ଠିକ୍ ତାଙ୍କର ଅନୁକରଣରେ ବିଜୟ ଚନ୍ଦ୍ର ମଜୁମଦାର ଲେଖିଛନ୍ତି, "But the influence of Upendra Bhanja upon him is visible in all his writings. In the matter of rhetorical composition, he excels Upendra in some points. ⁕ ⁕ Bidagdha Chintamoni is really the work which will perpetuate the literary fame of the author." (୪) ମନମୋହନ ଯାହା ଅଭିମନ୍ୟୁଙ୍କ ସମ୍ପର୍କରେ କହିଛନ୍ତି, ତାହାରି ଯେ ବିଜୟ ଚନ୍ଦ୍ର ପୁନରାବୃତ୍ତି ନିଜ ଭାଷାରେ କରିଛନ୍ତି, ଏଥିରେ ସନ୍ଦେହ ନାହିଁ । କେବଳ 'ସେତିକି ନୁହେଁ, ମନମୋହନ ଚକ୍ରବର୍ତ୍ତୀ ଉପେନ୍ଦ୍ର ଭଞ୍ଜଙ୍କ ସମ୍ପର୍କରେ ଅଭିମତ ଯାହା ଦେଇଥିଲେ, ସେହି ମତଟିକୁ ଅବିକଳ ଭାବେ ବିଜୟ ଚନ୍ଦ୍ର ମଜୁମଦାର ଉପେନ୍ଦ୍ରଙ୍କ ସମ୍ପର୍କରେ ଉଦ୍ଧାର କରିଛନ୍ତି । ତାହାକୁ ଏବେ ମଧ୍ୟ ଉପେନ୍ଦ୍ର ସାହିତ୍ୟ ସମାଲୋଚକମାନେ ଖଣ୍ଡନ କରିନାହାନ୍ତି । ସେହି ମତଟି ମନମୋହନ ଚକ୍ରବର୍ତ୍ତୀଙ୍କ ଭାଷାରେ ଏହିପରି, "Upendra Bhanja is in Oriya Language the most prominent fictional poet, the most obscene, the most unintelligible, and on the whole the best writer of rhetorical excellences" (୫) ତାଙ୍କର ଓଡ଼ିଆ ଭାଷା ଓ ସାହିତ୍ୟ ବିଷୟକ ଏହି ଦୀର୍ଘ ପ୍ରବନ୍ଧଟି ଯେପରି ବିଶ୍ଳେଷଣ ଧର୍ମୀ, ସେହିପରି ମୌଳିକ । ଏଥିରେ

---

(୩) M. M. Chakravarty—J. A S. B. (1898)— Page—378

(୪) B.C. Mazumdar—Typical Selections From Oriya Literature—Vol. Introduction.

(୫) M. M. Chakravarty—J. A. S. B. (1898—) page—376.

ପ୍ରାବନ୍ଧର ଔଚିତ୍ୟ, ସଂସ୍କୃତି, ସାମାଜିକ ସ୍ୱାତନ୍ତ୍ର୍ୟବୋଧ ଓ ଶାସ୍ତ୍ରୀୟତା ଦୃଷ୍ଟିରୁ ଓଡ଼ିଆ ସାହିତ୍ୟର ପାଶ୍ଚାତ୍ୟ ବର୍ଗର ସାହିତ୍ୟ ଅନୁଶୀଳନ କରିଛନ୍ତି । ବୋଧହୁଏ, ଊନବିଂଶ ଶତକରେ ଏଭଳି ବିଶ୍ଳେଷଣାତ୍ମକ ଦୃଷ୍ଟିକୋଣ ନେଇ ଓଡ଼ିଆ ସାହିତ୍ୟ ସମ୍ପର୍କରେ ଇଂରାଜୀ ଆଲୋଚନା ବାସ୍ତବରେ ତୀକ୍ଷ୍ଣ ଧୀଶକ୍ତି ଓ ଗଭୀର ଅଧ୍ୟବସାୟର ପରିଚାୟକ ।

(ଖ) ଓଡ଼ିଶାର ପ୍ରାଚୀନ ଇତିହାସ ଓ ଭୂଗୋଳକୁ ଆଧାର କରି ମନମୋହନ ଚକ୍ରବର୍ତ୍ତୀ ତିନିଗୋଟି ପ୍ରବନ୍ଧ ଲେଖିଛନ୍ତି । ସେଗୁଡ଼ିକ ହେଉଛି, 'Caves of Khandagiri and Udayagiri in Puri District','Chronology of the Eastern Ganga kings of Orissa', 'Notes on the Geography of Orissa in the 16th century' । ଖଣ୍ଡଗିରି, ଉଦୟଗିରିଠାରେ ରହିଥିବା ପ୍ରାଚୀନ କୀର୍ତ୍ତି ସମ୍ପର୍କରେ ଆଲୋକପାତ କଲାବେଳେ ଖ୍ରୀଷ୍ଟପୂର୍ବ ଶତକରେ ଉତ୍କଳରେ ପ୍ରଚଳିତ ଧର୍ମଧାରଣା ସମ୍ପର୍କରେ ସେ ସୂଚନା ଦେଇଛନ୍ତି । ସେ ଶିଳାଲେଖ ଓ ମାଦଳା ପାଞ୍ଜିର ଉପାଦାନକୁ ପରୀକ୍ଷା କରି ଓଡ଼ିଶାରେ ଗଙ୍ଗରାଜାମାନଙ୍କ ରାଜତ୍ୱ କାଳର ଏକ ବିବରଣୀ ଦେଇଛନ୍ତି । ସେ ଚୋଡ଼ଗଙ୍ଗଙ୍କଠାରୁ ୪ର୍ଥ ନରସିଂହ ଦେବଙ୍କ ପର୍ଯ୍ୟନ୍ତ ଗଙ୍ଗବଂଶୀୟ ରାଜାମାନଙ୍କ କାଳ ନିରୂପଣ କରିଛନ୍ତି । ପରବର୍ତ୍ତୀ ସମୟରେ ଗବେଷକମାନେ ତାଙ୍କର ଏହି ତଥ୍ୟପୂର୍ଣ୍ଣ 'Chronology of the Eastern Ganga Kings of Orissa' ପ୍ରବନ୍ଧକୁ ଭିତ୍ତି କରି ଗଙ୍ଗବଂଶ ସମ୍ପର୍କରେ ଅଧିକ ଗବେଷଣା କରିଛନ୍ତି । ଓଡ଼ିଶାର ଗଙ୍ଗରାଜାମାନଙ୍କ କାଳ ନିରୂପଣ ପ୍ରସଙ୍ଗରେ ତତ୍କାଳରେ ଏହା ଥିଲା ତାଙ୍କର ଏକ ଅଭିନବ ପ୍ରୟାସ । ତାଙ୍କ ମୃତ୍ୟୁର ଅବ୍ୟବହିତ ପୂର୍ବରୁ 'Notes on the Geography of Orissa in the 16th century' ପ୍ରବନ୍ଧଟି ଏସିଆଟିକ୍ ସୋସାଇଟି ପତ୍ରିକାରେ ପ୍ରକାଶ ପାଇଥିଲା । ସେ ମାଦଳାପାଞ୍ଜିର ଦେଶସଂଖ୍ୟା ଓ ଆଇନ୍-ଆକବରୀ ଗ୍ରନ୍ଥର ସୁବା ଓ ମହଲଗୁଡ଼ିକୁ ତୁଳନାତ୍ମକ ଭାବରେ ଆଲୋଚନା କରି ଷୋଡ଼ଶ ଶତକ ଓଡ଼ିଶାର ବିସ୍ତୃତ ଭୂଗୋଳର ଚିତ୍ର ଦେଇଛନ୍ତି । ଓଡ଼ିଶାର ବିଭିନ୍ନ ସ୍ଥାନ ଓ ଦେବାଦେବୀଙ୍କ ନାମ ମଧ୍ୟ ଏଥିରୁ ସେ ଉଦ୍ଧାର କରିଛନ୍ତି । ସୁଙ୍ଗରୁ ସେ ମଧ୍ୟ ବଙ୍ଗଳାର ଭୂଗୋଳ ସମ୍ପର୍କରେ ଏକ ପ୍ରବନ୍ଧ ପ୍ରକାଶ କରିଥିଲେ । ସେ ଓଡ଼ିଶାର ଭୂଗୋଳ ଓ ବଙ୍ଗଳାର ଭୂଗୋଳ ପ୍ରବନ୍ଧ ରଚନା କଲାବେଳେ ଅନେକାଂଶରେ Cunningham's Geography of Ancient India ପୁସ୍ତକରୁ ଅନେକ ପ୍ରେରଣା ପାଇଥିବା ପରି ମନେହୁଏ । ସେ ଓଡ଼ିଶାରେ

ପ୍ରାଚୀନ ଇତିହାସ, ଭୂଗୋଳ ସମ୍ପର୍କରେ ଆଲୋଚନା କଲାବେଳେ ସମକାଳୀନ ଓଡ଼ିଶାର ସାମାଜିକ, ସାଂସ୍କୃତିକ ଓ ରାଜନୀତିକ ଇତିହାସକୁ ଗୁରୁତ୍ୱ ଦେଇ ଅଛନ୍ତି ।

(ଗ) ପ୍ରାଚୀନ ଶିଳାଲେଖ ଓ ତାମ୍ରଫଳକ ଅନୁଶୀଳନ କରି ଓଡ଼ିଶାର ବିବରଣୀ ସଂଗ୍ରହରେ ତାଙ୍କର କୃତିତ୍ୱ ସୁବିଦିତ । ମାଦଳା ପାଞ୍ଜିକୁ ଐତିହାସିକ ଉପାଦାନ ରୂପେ ଗୁରୁତ୍ୱ ନଦେଇ ଶିଳାଲେଖ ଓ ତାମ୍ରଫଳକରୁ ଓଡ଼ିଶା ଇତିହାସର ଉପାଦାନ ତାଙ୍କଦ୍ୱାରା ହୋଇଥିଲା ସଂଗୃହୀତ । ସେ ଶିଳାଲେଖ ଓ ତାମ୍ରଫଳକମାନଙ୍କ ସଂପର୍କରେ ଯେଉଁ ଗବେଷଣା କରିଛନ୍ତି, ସେଗୁଡ଼ିକ ମଧ୍ୟରେ "Substance of paper Oriya Inscription etc.', 'Oriya Inscription of 15th and 16th century', 'Two Inscriptions of Kulasthambhadeva', 'Two copper-plate Inscriptions of King Narasimhadev of Orissa', 'An Inscription of the time of Kapilendra Dev from Gopinathpur in Cuttack District', 'Oriya Copper plate Inscription of Ramchandra Dev', 'An Oriya Inscription from Konaraka' ପ୍ରଧାନ । ମାଦଳାପାଞ୍ଜିରୁ ଓଡ଼ିଶାର ଇତିହାସ ସଂଗ୍ରହ ଧାରାକୁ ସେ ପସନ୍ଦ କରି ନାହାନ୍ତି । ଓଡ଼ିଶାର ରାଜବଂଶ ଓ ମଧ୍ୟଯୁଗୀୟ ଓଡ଼ିଶା ଇତିହାସ ସଂପର୍କରେ ମନ୍ତବ୍ୟ ଦେଇ ସେ ଲେଖିଛନ୍ତି "The mediaval history of Orissa is dark. The Madalapanji or the chronicle of the Jagannath Temple is almost the only source, but unless corroborated, the statements cannot be fully relied upon' (୬) ନରସିଂହଦେବଙ୍କ ରାଜତ୍ୱକାଳୀନ ଦୁଇଟି ତମ୍ବାପଟାର ପାଠକୁ ଅଧ୍ୟୟନ କରି ସେ ପ୍ରଥମେ ମାଦଳା ପାଞ୍ଜିରୁ ସଂଗୃହୀତ ଗଙ୍ଗବଂଶ ଇତିହାସ ପ୍ରତି ସନ୍ଦେହ କରିଥିଲେ । ଶିଳାଲେଖ, ତାମ୍ରଫଳକକୁ ନେଇ ଓଡ଼ିଶା ଇତିହାସ ସଂପର୍କରେ ଅନୁଶୀଳନ କଲାବେଳେ ସେ ହଠାତ୍ ମାଦଳାପାଞ୍ଜିକୁ ଅସ୍ୱୀକାର କରିଛନ୍ତି । ପାଞ୍ଜିର ସଂରକ୍ଷଣ ବିଧି, ଏହାର ପାଠରେ ବହିର୍ଣ୍ଣ ପରିବର୍ତ୍ତନ ପଦ୍ଧତି

(୬) M. M. Chakravarti—Two Copper plate Inscriptions of King Narasimhadev of Orissa—J. A. S. B. (1895)—Page—128.

ଲକ୍ଷ୍ୟକରି ସେ ଏହାର ପ୍ରାମାଣିକତା ପ୍ରତି ଅବିଶ୍ୱାସ କରିଥିଲେ । ଯେଉଁ ସମୟରେ ହଣ୍ଟର, ଷ୍ଟାର୍ଲିଂ, ଫ୍ରିଟ୍ ପ୍ରମୁଖଙ୍କ ପରି ବିଦେଶୀ ଐତିହାସିକମାନେ ମାଦଳାପାଞ୍ଜିକୁ ଭିତ୍ତି କରି ଓଡ଼ିଶା ଇତିହାସ ରଚନାରେ ଅଗ୍ରସର ହୋଇଥିଲେ, ସେ ସମୟରେ ତରୁଣ ଗବେଷକ ମନମୋହନ ଚକ୍ରବର୍ତ୍ତୀ ନିର୍ଭୀକ ଭାବରେ ଏହାର ଐତିହାସିକ ଗୁରୁତ୍ୱକୁ ଏଡ଼ାଇ ଦେଇ କହିଥିଲେ, "The historical value of Madalapanji has been very much over-rated. The Original informations were often not correctly entered. Then again the chronicle being on palm leaves, it had to be recopied three or four times in a century, and in recopying many mistakes crept in particularly in figures. Lastly the seba ( worship ) was closed several times on account of the Mahomedan raids, and many volumes must have been lost at the time. Hence the text is found full of mistakes and cannot be relied upon, unless corroborated by other evidence." ( ୬ ) ମାଦଳାପାଞ୍ଜିକୁ ଦୂରେଇ ରଖି ଓଡ଼ିଶା ଇତିହାସ ରଚନା କରିବାର ଉଦ୍ୟମ ମନମୋହନ ଚକ୍ରବର୍ତ୍ତୀଙ୍କ ସେକାଳରେ ପ୍ରଥମେ ସ୍ପର୍ଶ କରିଥିଲା । ଏଥିରୁ ତାଙ୍କର ବୈଜ୍ଞାନିକ ଅନୁସନ୍ଧିତ୍ସା ପ୍ରବୃତ୍ତି ସହଜରେ ଅନୁମେୟ । ମନମୋହନ ଚକ୍ରବର୍ତ୍ତୀ ପ୍ରାଚୀନ ଶିଳାଲେଖ, ତାମ୍ରଫଳକ ଭିତ୍ତିରେ ଓଡ଼ିଶା ଇତିହାସ ସଂଗ୍ରହ କରିବା ସହିତ ଓଡ଼ିଆ ଭାଷା, ଲିପି, ସଂସ୍କୃତି ଓ ଜନଜୀବନ ସମ୍ପର୍କରେ ନାନା ବିଷୟ ଅଧ୍ୟୟନ କରିଥିଲେ । ମନମୋହନ ଯେଉଁ ଧରଣର ଐତିହାସିକ ଅନୁଶୀଳନ କରିଛନ୍ତି, ତାହା ଯଥାର୍ଥରେ ତାଙ୍କର ପ୍ରାଚ୍ୟବିଦ୍ୟା ଅନୁରାଗ ଓ ଗଭୀର ମନନଶୀଳତାର ନିଦର୍ଶନ । ପ୍ରତ୍ନତାତ୍ତ୍ୱିକ ଅବଶେଷକୁ ନେଇ ଇତିହାସ ରଚନା ମାର୍ଗଟି ତଦାନୀନ୍ତନ ସମୟରେ ଅନେକାଂଶରେ ଅଜ୍ଞାତ ଥିଲେ ସୁଦ୍ଧା, ମନମୋହନ ଥିଲେ ସେଇ ନୂତନ ମାର୍ଗର ଗବେଷକ । ପ୍ରକୃତରେ

---

(୭) M. M. Chakravarti—An Inscription of the time of Kapilendra Dev of Orissa, from Gopinathpur in Cuttack District J, A. S B (1900) page

ପ୍ରତ୍ନତାତ୍ତ୍ୱିକ ଅନୁସନ୍ଧାନ ଇତିହାସକୁ ନୂତନ ରୂପରେଖ ଦେବାରେ ସମ୍ଭବ ହୋଇପାରେ । ପ୍ରତ୍ନତାତ୍ତ୍ୱିକ ଅବଶେଷକୁ ନେଇ ଇତିହାସ ରଚନାର ଗୁରୁତ୍ୱ ସମ୍ପର୍କରେ ଏଠାରେ ଆର୍. ସି. ମଜୁମଦାରଙ୍କ ଏକ ଉକ୍ତି ଉଦ୍ଧାର କରାଯାଉଛି— "It is a common saying that the pen is mightier than the sword, but in the case of Indological studies even a spade, not to speak of a sword, has proved mightier than the pen. For much in written documents has been discredited, disproved or cast in to shade by the archaeological discoveries." (୮) ମନମୋହନ ଚକ୍ରବର୍ତ୍ତୀ ପ୍ରଥାସିଦ୍ଧ ଧାରାରୁ ଦୂରେଇ ଯାଇ ଶିଳାଲେଖ, ତାମ୍ରଫଳକ ଓ ବିଭିନ୍ନ ମୂର୍ତ୍ତି, ମୁଦ୍ରାକୁ ନେଇ ଓଡ଼ିଶା ଇତିହାସ ରଚନା ପାଇଁ ଅଭିନବ ପ୍ରୟାସ କରିଥିଲେ ।

(ଘ) ମନମୋହନ ଚକ୍ରବର୍ତ୍ତୀ ଓଡ଼ିଶାରେ ପ୍ରଚଳିତ ପ୍ରାଚୀନ ଲିପି ସଂଗ୍ରହ କରିବାରେ ଯେପରି ନିଷ୍ଠା ପ୍ରଦର୍ଶନ କରିଥିଲେ, ସେହିପରି ଓଡ଼ିଶାର ପ୍ରାଚୀନ ମୁଦ୍ରା ସମ୍ପର୍କରେ ସବିଶେଷ ଅଧ୍ୟୟନ କରିଥିଲେ । ପ୍ରାଚୀନ ଓଡ଼ିଶାରେ ପ୍ରଚଳିତ ମୁଦ୍ରା ସମ୍ବନ୍ଧରେ ସେ ଲେଖିଥିଲେ ଏକ ପ୍ରାମାଣିକ ପ୍ରବନ୍ଧ । ପ୍ରଥମେ ଏହି ପ୍ରବନ୍ଧଟି "Troy Weights and General currency of Ancient Orissa" ନାମରେ ଏସିଆଟିକ୍ ସୋସାଇଟି ପତ୍ରିକାରେ ପ୍ରକାଶ ପାଇଥିଲା । ଏହି ପ୍ରବନ୍ଧଟି ମନମୋହନ ଚକ୍ରବର୍ତ୍ତୀଙ୍କ ପ୍ରଥମ ଗବେଷଣା ପ୍ରବନ୍ଧ । ଓଡ଼ିଶାର ପ୍ରଚଳିତ ମୁଦ୍ରା ଓ ମାପ ସାମଗ୍ରୀକୁ ନେଇ ଓଡ଼ିଶାର ଇତିହାସ ବିଶ୍ଳେଷଣ କରିବା ପ୍ରକୃତରେ ତାଙ୍କର ପାଣ୍ଡିତ୍ୟ ଓ ସୂକ୍ଷ୍ମ ବୁଦ୍ଧିଧାରାର ଅସାଧାରଣ ପରିଚୟ ଦେଇଥିଲା । ଓଡ଼ିଶାର ଚିତ୍ରକଳା, ଭାସ୍କର୍ଯ୍ୟ ସମ୍ପର୍କରେ ସେ ଗବେଷଣା କରିଥିଲେ । ଏ ସମ୍ପର୍କରେ ତାଙ୍କର ଗବେଷଣାମୂଳକ ପ୍ରବନ୍ଧ ହେଉଛି—"Certain unpublished drawings of antiquities in Orissa and Northern circars." ଓଡ଼ିଶାର ଚିତ୍ରକଳାର ଯେଉଁ ଐତିହ୍ୟ ରହିଛି, ତାହାର ମୂଲ୍ୟ ସେ ଏହି ପ୍ରବନ୍ଧରେ ଆକଳନ କରିଛନ୍ତି । ଓଡ଼ିଶା ବିଷୟରେ ସେ ଗେଜେଟିୟରରେ କେତେକ ବିବରଣୀ ଦେଇଛନ୍ତି । ବଙ୍ଗ ସରକାରଙ୍କ ଦ୍ୱାରା

---

(୮) R. C. Mazumdar—Historigraphy in Modern India—( 1970 ) page-2

ପ୍ରକାଶିତ ଗେଜେଟିୟରରେ ସେ—'Chapters on the History of Orissa in the Gazetteers of Cuttack and Balasore'ର ରଚୟିତା । ଓଡ଼ିଶା ଇତିହାସ ପ୍ରତି ତାଙ୍କର ସ୍ୱତନ୍ତ୍ର ନିଷ୍ଠା ଥିଲା । ସେ ଥିଲେ ବାସ୍ତବରେ ଜଣେ ସୌଖୀନ ଐତିହାସିକ । କୌଣସି ବୃତ୍ତିଗତ କାରଣରୁ ବା କାହାର ନିର୍ଦ୍ଦେଶରେ ସେ ଇତିହାସ ରଚନାରେ ଅଗ୍ରସର ହୋଇ ନଥିଲେ । ସତ୍ୟ ସନ୍ଧାନ ପ୍ରବୃତ୍ତିଟି ତାଙ୍କୁ ଓଡ଼ିଶା ଇତିହାସ ଅଧ୍ୟୟନ ପାଇଁ ପ୍ରେରଣା ଦେଇଥିଲା । କଟକ, ପୁରୀ, ଯାଜପୁର ପ୍ରଭୃତି ସ୍ଥାନର ଐତିହାସିକ ପରିବେଶ ତାଙ୍କୁ ଇତିହାସ ଗବେଷଣା ସକାଶେ ଉତ୍ସାହ ପ୍ରଦାନ କରିଥିଲା । ସେ ଯେଉଁଠି ବ୍ୟକ୍ତିଗତ ଜୀବନ ଅତିବାହିତ କରିଛନ୍ତି, ସେ ସ୍ଥାନର ଇତିହାସ, ସଂସ୍କୃତି ଓ ସମାଜକୁ ଜାଣିବା ପାଇଁ ତାଙ୍କ ଭିତରେ ପ୍ରବଳ ବାସନା ଥିଲା । ଏ ସକାଶେ ସେ ଓଡ଼ିଶା ସମ୍ପର୍କରେ ପୁଙ୍ଖାନୁପୁଙ୍ଖ ଜାଣିବା ପାଇଁ ଗବେଷଣାକୁ ଜୀବନର ବ୍ରତ ରୂପେ ଗ୍ରହଣ କରିଥିଲେ ।

ଓଡ଼ିଶା ବ୍ୟତୀତ ସେ ବଙ୍ଗର ସାଂସ୍କୃତିକ ସମ୍ପର୍କ, ରାଜବଂଶାବଳୀ ସମ୍ପର୍କରେ ଉଲ୍ଲେଖନୀୟ ଗବେଷଣା କରିଥିଲେ । ତାଙ୍କର 'Notes on Gaur and other old places of Bengal', 'Changes of Boundaries of Districts of Bengal', 'Pre-Mughal Mosques of Bengal' ଗୋଟିଏ ଗୋଟିଏ ପ୍ରସିଦ୍ଧ ଐତିହାସିକ ପ୍ରବନ୍ଧ । ଏ ଧରଣର ପ୍ରବନ୍ଧର ଉପାଦେୟତା ଏବେସୁଦ୍ଧା ଗବେଷକମାନେ ସ୍ୱୀକାର କରିଥାନ୍ତି । କାଳିଦାସଙ୍କ ସମୟ ଓ ସୃଷ୍ଟି ସମ୍ଭାରକୁ ନେଇ ସେ 'Date of Kalidasa', 'Kalidasa and Guptas', 'On the genuineness of the eighth canto of the poem Kumarasambhava'—ଏହିପରି କେତୋଟି ପ୍ରବନ୍ଧ ଲେଖିଛନ୍ତି । ସଂସ୍କୃତ ସାହିତ୍ୟର ବରେଣ୍ୟ କବି କାଳିଦାସଙ୍କ ପ୍ରତି ତାଙ୍କର ସ୍ୱତନ୍ତ୍ର ରୁଚି ଏହି ପ୍ରବନ୍ଧମାନଙ୍କରୁ ସୂଚିତ । ସେ କେବଳ ଇତିହାସ ଅନୁସନ୍ଧିତ୍ସୁ ନଥିଲେ, ଅଧିକନ୍ତୁ ଥିଲେ ସଂସ୍କୃତ କାବ୍ୟ ସାହିତ୍ୟର ବିଦଗ୍ଧ ରସିକ ।

ମନମୋହନ ଚକ୍ରବର୍ତ୍ତୀ ଜଣେ ପ୍ରତିଭାଶାଳୀ ଗବେଷକ ଥିଲେ । ~~ଗବେଷଣା~~ ତାଙ୍କର ଜୀବନଧାରା ସହିତ ମିଶି ଯାଇଥିଲା । ତାଙ୍କ ଗବେଷଣାରେ ସତ୍ୟର ଦୀପ୍ତି ଉଦ୍ଭାସିତ ହେଉଥିଲା । ସେ ପ୍ରାୟ ନବେ ବର୍ଷ ତଳେ ଯେଉଁସବୁ ଗବେଷଣା କରିଥିଲେ, ଏବେ ବି ସେସବୁ ଗବେଷଣାର ସିଦ୍ଧାନ୍ତ ଆମ ପାଇଁ ଦିଗ୍‌ଦର୍ଶନ ହୋଇ ରହିଛି । ତାଙ୍କୁ ଉପେକ୍ଷା କରି ଓଡ଼ିଶାର ଇତିହାସ ଗବେଷଣା

ଓ ଓଡ଼ିଆ ସାହିତ୍ୟର ଐତିହାସିକ ଅନୁଶୀଳନ ସମ୍ଭବ ନୁହେଁ । ଊନବିଂଶ ଶତକର ଶେଷପାଦ ଓ ବିଂଶଶତକର ଆଦ୍ୟପାଦରେ ଜଣେ ଡେପୁଟି ମାଜିଷ୍ଟ୍ରେଟ୍ କୌଣସି ସରକାରୀ ପ୍ରୋତ୍ସାହନ ନପାଇ ଯେପରି ସ୍ୱ-ଗବେଷଣା ମନୋବୃତ୍ତିର ପରିଚୟ ଦେଇଯାଇଛନ୍ତି, ତାହା ଦେଖିଲେ ବାସ୍ତବିକ ଆଶ୍ଚର୍ଯ୍ୟ ହେବାକୁ ହୁଏ । ଆଜି ଯେପରି ଗବେଷଣା ଚାକିରି, ପଦୋନ୍ନତି ଓ ଅର୍ଥାଗମର ସୁଗମ ଉପାୟ ହୋଇଛି, ତାହା ବାସ୍ତବରେ ଅନେକଙ୍କ ସାହିତ୍ୟ, ଇତିହାସ ଗବେଷଣା ନାମରେ ଆବର୍ଜନା ସୃଷ୍ଟି କରୁଛି ; କିନ୍ତୁ ମନମୋହନ ଚକ୍ରବର୍ତ୍ତୀ ଥିଲେ କର୍ମ ଓ କୃତିତ୍ୱରେ, ମନ ଓ ମନନରେ, ସତ୍ୟ ସନ୍ଧାନ ଓ ନିଷ୍ଠାରେ ଜଣେ ସୁଗବେଷକ । ସେଥିପାଇଁ ଊନବିଂଶ ଶତକର ଏହି ବରେଣ୍ୟ ଗବେଷକଙ୍କୁ ସଂପ୍ରତି ସ୍ମରଣ କରିବାର ଅବକାଶ ରହିଛି ।



# ପ୍ରାବନ୍ଧିକ ବିରୂପାକ୍ଷ କର

ଜଣେ ପ୍ରଥିତଯଶା ପ୍ରାବନ୍ଧିକ ଭାବେ ବିରୂପାକ୍ଷ କରଙ୍କ ସାଧନା ସ୍ମରଣୀୟ । ଅସ୍ମ ସଂସ୍କୃତି, ଇତିହାସ, ପୁରାଣ ଓ ପ୍ରାଚୀନ କିମ୍ବଦନ୍ତୀକୁ ନେଇ ପ୍ରବନ୍ଧ ରଚନାରେ ତାଙ୍କର କୃତିତ୍ୱ ଦେଖିଲେ ବିସ୍ମିତ ହେବାକୁ ହୁଏ । ସେ ଥିଲେ ଏକାଧାରରେ ସମାଜସଂସ୍କାରକ, ଐତିହାସିକ, ପୁରାତତ୍ତ୍ୱବିଦ୍ ଓ ଘଟନାବହୁଳ କିମ୍ବଦନ୍ତୀମାନଙ୍କର ସଂଗ୍ରାହକ । ସେ ପୂର୍ବକଥା, ଜନଶ୍ରୁତି ଓ ସାହିତ୍ୟ ଭିତରେ ଇତିହାସ ଖୋଜିଛନ୍ତି । ପୁଣି ସମକାଳୀନ ସାହିତ୍ୟକୁ ଐତିହାସିକର ଅନ୍ୟତମ ସହାୟକ ଉପାଦାନ ରୂପେ ଗ୍ରହଣ କରିଛନ୍ତି । ଏ ସମ୍ପର୍କରେ ପ୍ରାବନ୍ଧିକଙ୍କ ଉକ୍ତି ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । "ଇତିହାସର ପ୍ରକୃତ ଅର୍ଥ 'ପୂର୍ବକଥା' । ପ୍ରତ୍ୟେକ ଲୋକର ତଥା ପ୍ରତ୍ୟେକ ଜାତିର କିଛି ହେଲେ 'ପୂର୍ବକଥା' ଅଛି । ସେହି ଘଟନାଗୁଡ଼ିକ ଉକ୍ତ ଦେଶ ବା ଜାତିର 'ପୂର୍ବକଥା' ବା ଇତିହାସ । ଇତିହାସ କିନ୍ତୁ ସବୁବେଳେ ସମସ୍ତଙ୍କୁ ଜଣା ନଥାଏ । ପୂର୍ବକଥାଗୁଡ଼ିକ ନାନାଭାବରେ ଲୁଚି ରହିଥାଏ । ଇତିହାସ ଲେଖକ ସେଗୁଡ଼ିକୁ ଖୋଜି ସଂଗ୍ରହ କରି ପୁସ୍ତକାକାରରେ ଲିପିବଦ୍ଧ କରନ୍ତି । ଘଟନା ଘଟିଲାବେଳେ ହୁଏତ ସେ ବିଷୟରେ କେହି କିଛି ଲେଖିଥାଏ । ଇତିହାସ ଲେଖକ ସେହି ଲେଖାକୁ ସମସାମୟିକ ସାହିତ୍ୟ 'Contemporary Literature' ବୋଲି କହନ୍ତି । ସମସାମୟିକ ସାହିତ୍ୟ ଐତିହାସିକର ଏକ ପ୍ରଧାନ ସହାୟ ।" (୧) ସୁତରାଂ ସାହିତ୍ୟ, ପୂର୍ବକଥା ଓ ସାଂସ୍କୃତିକ ଭାବ ପ୍ରବାହ ଭିତରୁ ସେ ଇତିହାସର ଆଲୋଚନା କରିଛନ୍ତି ।

ବିରୂପାକ୍ଷ କରଙ୍କ ପ୍ରବନ୍ଧ ଆଲୋଚନା ପରିପ୍ରେକ୍ଷୀରେ ତାଙ୍କ ଜୀବନୀ ସମ୍ପର୍କରେ ସମ୍ୟକ୍ ଆଲୋଚନାର ଆବଶ୍ୟକତା ରହିଛି । ୧୮୯୩ ମସିହା ସେପ୍ଟେମ୍ବର ୧୫ ତାରିଖରେ ବାଙ୍କୀର ଇତିହାସପ୍ରସିଦ୍ଧ ଜୁମପଡ଼ା ଗଡ଼ରେ

---

(୧) ଉତ୍କଳ ସାହିତ୍ୟ—୨୪/୨ ଆଲୋଚନା—ବିରୂପାକ୍ଷ କର-ପୃ ୬୦ ।

ତାଙ୍କର ଜନ୍ମ । ପ୍ରାକୃତିକ ଦୃଶ୍ୟଭରା ଏହି 'ଗଡ଼ର ନୈସର୍ଗିକ ସୁଷମା ବାଲ୍ୟକାଳରୁ ତାଙ୍କୁ ପ୍ରଭାବିତ କରିଥିଲା । ସେ ଜନ୍ମସ୍ଥାନର ପ୍ରସ୍ତର ପାହାଡ଼, ଝଙ୍କିଲ-ଅନୁର୍ବର ଭୂମିର ଗୁଳ୍ମ-ଲତା, ମେଘ ଆକାଶର ଶୋଭା, ଅନତିଦୂରରେ ମହାନଦୀର ନୀଳ ଜଳରାଶି, ଆମ୍ରକାନନବେଷ୍ଟିତ ଗଡ଼ର ଛାୟା-ଶୀତଳ ପରିବେଶ ଦେଖି ହେଉଥିଲେ ବିମୋହିତ । ପିଲାଦିନରୁ ଡମପଡ଼ା ଓ ଏହାର ଆଖପାଖ ଅଞ୍ଚଳର ଇତିହାସ ଜାଣିବା ପାଇଁ ତାଙ୍କର ଥିଲା ପ୍ରବଳ ଆଗ୍ରହ । ସପ୍ତଶଯ୍ୟା, ସର୍ପେଶ୍ୱର, ଭଟ୍ଟାରିକା, ନରାଜ, ଶାରଙ୍ଗଗଡ଼ ସମ୍ପର୍କରେ ସେ ବହୁ କଥା ପିଲାଦିନରୁ ଜାଣିଥିଲେ । ତାଙ୍କର ବଡ଼ଭାଇ ପ୍ରସିଦ୍ଧ ଶିକ୍ଷକ ଚିନ୍ତାମଣି କରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସେ ଶିକ୍ଷାଲାଭ କରିଥିଲେ । ଡାଙ୍କୀରୁ ବାଲ୍ୟଶିକ୍ଷା ଶେଷ କରି ସେ ପୁରୀ ଜିଲ୍ଲାସ୍କୁଲରେ ୧୯୦୮ ମସିହାରେ ପ୍ରବେଶ କଲେ । ସେତେବେଳକୁ ପୁରୀ ଜିଲ୍ଲାସ୍କୁଲର ପ୍ରଧାନ ଶିକ୍ଷକ ଥାଆନ୍ତି ବିଦ୍ୟାବିନୋଦ ମଧୁସୂଦନ ଦାଶ । 'ନୀଳାଚଳ' କାବ୍ୟର ରଚୟିତା, ଉତ୍କଳ ସାହିତ୍ୟ ପତ୍ରିକାରେ ବିଭିନ୍ନ ପ୍ରବନ୍ଧର ଲେଖକ ଭାବେ ସେ ବେଶ୍ ସୁନାମ ଅର୍ଜ୍ଜନ କରିଥିଲେ । ବିରୂପାକ୍ଷ ଜଣେ ମେଧାବୀ ଛାତ୍ର ଓ ସାହିତ୍ୟ ଅନୁରାଗୀ ହୋଇଥିବାରୁ ପ୍ରଧାନଶିକ୍ଷକଙ୍କ ଶ୍ରଦ୍ଧାଭାଜନ ହୋଇଥିଲେ । ୧୯୧୨ ମସିହାରେ ପ୍ରଥମଶ୍ରେଣୀରେ ପୁରୀ ଜିଲ୍ଲାସ୍କୁଲରୁ ସେ ମାଟ୍ରିକ୍ ପାଶ୍ କରିଥିଲେ । ସ୍କୁଲ ଅଧ୍ୟୟନ ସମୟରେ ତାଙ୍କର ଅନ୍ୟତମ ବନ୍ଧୁ ଥିଲେ ଲିଙ୍ଗରାଜ ମିଶ୍ର । ତାଙ୍କର ଏହି ବନ୍ଧୁ ଜଣକ ତାଙ୍କୁ ସାହିତ୍ୟ, ଇତିହାସ ଆଲୋଚନାରେ ଯଥେଷ୍ଟ ପ୍ରେରଣା ଦେଇଥିଲେ । ମାଟ୍ରିକ୍ ପରେ ସେ କଲିକତାରେ ବି. ଏ. ଅଧ୍ୟୟନ କରିଥିଲେ । ୧୯୧୬ ମସିହାରେ ସେ କୃତିତ୍ୱର ସହିତ ଡିଷ୍ଟିଙ୍କସନ୍ ପାଇ ବି. ଏ. ପାଶ୍ କରିଥିଲେ । ବି. ଏ. ପାଶ୍ ପରେ ସେ କିଛିକାଳ ଚାକିରି କରି ପରେ ବି. ଏଲ୍. ପାଶ୍ କଲେ । ମଧୁପୁର ରାଜାଙ୍କ ଦେଓ୍ୱାନ୍ ଭାବରେ କାର୍ଯ୍ୟ କରି ସେ ବିଚକ୍ଷଣତାର ପରିଚୟ ଦେଇଥିଲେ । ଦେଓ୍ୱାନ୍ ଥିବା ସମୟରେ ସେ ବିଭିନ୍ନ କାର୍ଯ୍ୟରେ ଯାଜପୁର ଆସୁଥିଲେ । ଯାଜପୁରର ସପ୍ତମାତୃକା, ବିରଜା ମନ୍ଦିର, ଦଶାଶ୍ୱମେଧ ଘାଟ, ସିଦ୍ଧେଶ୍ୱର, ତ୍ରିଲୋଚନେଶ୍ୱର ପ୍ରଭୃତି ଐତିହାସିକ ସ୍ଥାନ ତାଙ୍କୁ ଏହି ସ୍ଥାନକୁ ଆକୃଷ୍ଟ କରି ଆଣିଥିଲା । ଫଳରେ ଜଣେ ଆଇନଜୀବୀ ଭାବରେ ଯାଜପୁରକୁ ବିରୂପାକ୍ଷ କର ନିଜର କର୍ମକ୍ଷେତ୍ର ରୂପେ ଗ୍ରହଣ କରିନେଲେ । ସେ ଯାଜପୁରର ସାଂସ୍କୃତିକ ବିକାଶ ପାଇଁ ବହୁବିଧ ଉଦ୍ୟମ କରିଥିଲେ । ବିଶେଷ କରି ଶିକ୍ଷାପ୍ରସାର କ୍ଷେତ୍ରରେ [illegible] ଗଠନମୂଳକ ମନୋଭାବ ନେଇ ନରସିଂହ ଚୌଧୁରୀ କଲେଜକୁ ଗଢ଼ିଥିଲେ ତାହା ବାସ୍ତବରେ ପ୍ରଶଂସନୀୟ । ଯାଜପୁରର ଐତିହାସିକ କୀର୍ତ୍ତି ସଂରକ୍ଷଣ ପାଇଁ ସେ ବାରମ୍ବାର ସରକାରଙ୍କ ଦୃଷ୍ଟି ଆକର୍ଷଣ କରୁଥିଲେ । ଏହାର ପ୍ରାଚୀନ କୀର୍ତ୍ତିମାନଙ୍କ

ସର୍ବେକ୍ଷଣ କରି ଏକ ଚମତ୍କାର ବିବରଣୀ ସେ ପ୍ରସ୍ତୁତ କରିଥିଲେ । ତାଙ୍କର ବ୍ୟବସାୟ ଥିଲା ଆଇନ ସତ; କିନ୍ତୁ ସେ ଥିଲେ ଇତିହାସ-ପ୍ରାଣ । ଜଣେ ଐତିହାସିକର ସମସ୍ତ ସଦ୍‌ଗୁଣ ତାଙ୍କର ଥିଲା । ସତ୍ୟ, ନିରପେକ୍ଷତା, ସର୍ବଧର୍ମସମନ୍ୱୟ ଭାବଧାରାର ସେ ଥିଲେ ପୋଷକ । ପ୍ରସଙ୍ଗକ୍ରମେ ଏଠାରେ ଇତିହାସ ଓ ଐତିହାସିକ ସମ୍ପର୍କିତ ଏହି ଉକ୍ତିଟି ଉଦ୍ଧାର କରାଯାଇପାରେ । "The compiler of history must be a man of trust, veracity and impartiality. If he records the virtues of a king or a celebrated personality, he should not hide his vices and weakness. The historian must on the basis of religion, belief, truth and conscience, be a recorder of truth and truth alone," (୧)

ଇତିହାସ ସଙ୍କଳନକାରୀ ନିଶ୍ଚିତ ଭାବରେ ଜଣେ ବିଶ୍ୱସ୍ତ ଅନୁସନ୍ଧିତ୍ସୁ ଏବଂ ଅପକ୍ଷପାତୀ ବ୍ୟକ୍ତି ହେବା ବିଧେୟ । ସେ ଯଦି ଜଣେ ରାଜା ବା ସମ୍ମାନିତ ବ୍ୟକ୍ତିଙ୍କ ବିଷୟ ଲିପିବଦ୍ଧ କରନ୍ତି, ତେବେ ତାଙ୍କର ଦୋଷ ଦୁର୍ବଳତା ସବୁକୁ ଘୋଡ଼ାଇ-ବାକୁ ଚେଷ୍ଟା ଯେପରି ନ କରନ୍ତି । ଧର୍ମ, ବିଶ୍ୱାସ, ସତ୍ୟ ଏବଂ ବିବେକ ଦୃଷ୍ଟିରୁ ଐତିହାସିକ କେବଳ ସତ୍ୟହିଁ ଲିପିବଦ୍ଧ କରିବେ । ସେ ଇତିହାସକୁ ଏକ ପବିତ୍ର ରଚନା ରୂପେ ଗ୍ରହଣ କରିଥିଲେ ଓ ସତ୍ୟଦୃଷ୍ଟିକୁ ଇତିହାସର ଅପରିହାର୍ଯ୍ୟ ଆବଶ୍ୟକତା ଭାବେ ଧରି ନେଇଥିଲେ । ଜୀବନବ୍ୟାପୀ ସେ ଓଡ଼ିଶାର ଇତିହାସ, ସଂସ୍କୃତି ଓ ଜୀବନଧାରା ସମ୍ପର୍କରେ ସତ୍ୟାନୁସନ୍ଧାନ କରିଛନ୍ତି । ଏହି ସତ୍ୟସନ୍ଧାନ ପାଇଁ ପ୍ରାଚୀନ ଉତ୍କଳର ନୌପରିଭ୍ରମଣଠାରୁ ଆରମ୍ଭ କରି ଜାତିବର୍ଗର ପର୍ଯ୍ୟନ୍ତ ସବୁଠି ସେ ଦୃଷ୍ଟି ବୁଲାଇଛନ୍ତି । ଇତିହାସ ପ୍ରତି ଶ୍ରଦ୍ଧା ଓ ସମ୍ମାନ ଦେଖାଇ ଏହି ସଂସ୍କୃତିସଚେତନ ପ୍ରାବନ୍ଧିକ ବିରୂପାକ୍ଷ ୧୯୬୮ ମସିହା ଡିସେମ୍ବର ୨୭ ତାରିଖରେ ଇହଲୋକରୁ ବିଦାୟ ନେଇଛନ୍ତି ।

ବିରୂପାକ୍ଷ କରଙ୍କ ପ୍ରବନ୍ଧଗୁଡ଼ିକୁ ଆଲୋଚନାର ସୁବିଧା ଦୃଷ୍ଟିରୁ ତିନ ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ (କ) ପ୍ରାଚୀନ ଉତ୍କଳସମ୍ବନ୍ଧୀୟ ଐତିହାସିକ

---

(୧) R C. Majumdar--Historiography in Modern India—Asha Publishing House [1970] page-25

ଗବେଷଣାମୂଳକ ପ୍ରବନ୍ଧ । (ଖ) ପୌରାଣିକ, ପରମ୍ପରା ଓ କିମ୍ବଦନ୍ତୀ ଆଶ୍ରୟରେ ରଚିତ ପ୍ରବନ୍ଧ । (ଗ) ସଂସ୍କୃତି ସମ୍ବନ୍ଧୀୟ ପ୍ରବନ୍ଧ । ଏହି ତିନି ପ୍ରକାରର ପ୍ରବନ୍ଧରେ ସେ ଜଣେ ଗବେଷକ, ଐତିହାସିକ ଓ ସାହିତ୍ୟାଲୋଚକର ପରିଚୟ ଦେଇଛନ୍ତି । ସେ ଐତିହାସିକ ପ୍ରବନ୍ଧଲେଖକମାନେ କେବଳ ତଥ୍ୟ ସଂଗ୍ରହ କରି ନାହାନ୍ତି, ଅଧିକନ୍ତୁ ମାନବସମାଜର ମୁକ୍ତିକାମନା ସହିତ ତାଙ୍କର ଜୀବନନାଟକରେ ଘଟିଥିବା ସ୍ମରଣୀୟ ଘଟଣାବଳୀର ଲିପିବଦ୍ଧ କରିଛନ୍ତି । ତାଙ୍କର ଇତିହାସ ରଚନାର ଏହି ଢଙ୍ଗ ପ୍ରତି ଆଲୋକପାତ କଲାବେଳେ ବିଶିଷ୍ଟ ଐତିହାସିକ ରମେଶଚନ୍ଦ୍ର ମଜୁମଦାରଙ୍କ ମନ୍ତବ୍ୟ ପ୍ରଣିଧାନଯୋଗ୍ୟ ।

> "It is said that the historians merely land on their basis, while the real task of history is to reveal the spirit of humanity and trace the course of progress towards liberty." (୩)

ସାଧାରଣତଃ ଦେଖାଯାଏ ଯେ ଐତିହାସିକ କେବଳ ନିଜ ପଦ୍ଧତିରେ ଲିପିବଦ୍ଧ କରିଯାଆନ୍ତି । ବାସ୍ତବିକ୍ କ୍ଷେତ୍ରରେ ଇତିହାସର କର୍ତ୍ତବ୍ୟ ହେଉଛି ମାନବିକତା ଧର୍ମ ଉନ୍ମୋଚନ କରିବା ତଥା ମୁକ୍ତିର ପଥ ନିର୍ଦ୍ଦେଶ କରିବା । ପ୍ରକୃତରେ ବିରୂପାକ୍ଷଙ୍କ ପ୍ରବନ୍ଧଗୁଡ଼ିକ ଇତିହାସର ଶୁଷ୍କ ସନ, ତାରିଖ ସମ୍ବଳିତ ରାଜବଂଶ ବିବରଣୀ ନୁହେଁ ବରଂ ଏହା ଭିତରେ ଜୀବନ, ଜଗତ ସମ୍ବନ୍ଧୀୟ ଯାବତୀୟ ପ୍ରସଙ୍ଗ, ସୌନ୍ଦର୍ଯ୍ୟବୋଧ, ରସିକତା ପ୍ରକଟିତ ।

ପ୍ରାଚୀନ ଉତ୍କଳ ସମ୍ବନ୍ଧୀୟ ଐତିହାସିକ ଗବେଷଣାମୂଳକ ପ୍ରବନ୍ଧମାନଙ୍କ ମଧ୍ୟରେ, 'ଉତ୍କଳରେ ବୌଦ୍ଧ ଯୁଗର ଇତିହାସ', 'ପ୍ରାଚୀନ ଉତ୍କଳରେ ଜଳଯାତ୍ରା', 'ପ୍ରାଚୀନ ଯାଜପୁର', 'ଯାଜପୁର', 'ବିରଜା', 'କେଶରୀବଂଶ', 'ଗଙ୍ଗବଂଶ ଓ କେଶରୀବଂଶ' ପ୍ରଭୃତି ପ୍ରଧାନ । ଉତ୍କଳରେ ବୌଦ୍ଧଯୁଗର ଇତିହାସ ଏକ ଦୀର୍ଘ ପ୍ରବନ୍ଧ । ଏଥିରେ ସେ କହିଛନ୍ତି ଯେ ଓଡ଼ିଶାରେ ବୌଦ୍ଧଯୁଗରେ କୌଣସି ରାଜା

---

(୩) R. C. Majumdar · Historiography in Modern India—Asha Publishing House (1970)-page-50

ପ୍ରକଳ୍ପ କରିନାହାନ୍ତି । ବିରୂପାକ୍ଷ କରଙ୍କ ଏହି ମତକୁ ପରବର୍ତ୍ତୀ ସମୟରେ ଐତିହାସିକ ସତ୍ୟନାରାୟଣ ରାଜଗୁରୁ ତାଙ୍କର 'ଓଡ଼ିଶାରେ ବୌଦ୍ଧଧର୍ମର ପ୍ରଭାବ' ପ୍ରବନ୍ଧରେ ଅସ୍ୱୀକାର କରିଛନ୍ତି । 'ପ୍ରାଚୀନ ଉତ୍କଳରେ ଜଳଯାତ୍ରା' ପ୍ରବନ୍ଧଟି ବିରୂପାକ୍ଷ ପ୍ରବନ୍ଧମାନଙ୍କର ସର୍ବଶ୍ରେଷ୍ଠ ନିଦର୍ଶନ । ଅତୀତ ଓଡ଼ିଶାର ବାଣିଜ୍ୟ ବ୍ୟବସାୟର ମଧୁର ସ୍ମୃତିଚାରଣ ସେ ଏଥିରେ କରିଛନ୍ତି । ଏ ପୁସ୍ତକଟି ତାଙ୍କର ଏକ ଗବେଷଣାତ୍ମକ ପୁସ୍ତକ । ପ୍ରାଚୀନ ଉତ୍କଳର ବାଣିଜ୍ୟ ଓ ନୌବାଣିଜ୍ୟର ପ୍ରାମାଣିକ ପୁସ୍ତକରୂପେ ଏହା ଏବେସୁଦ୍ଧା ପାଠକ ମହଲରେ ଆଦୃତ । ପୁରାଣର ପ୍ରସଙ୍ଗମାନଙ୍କୁ ଓ କିମ୍ବଦନ୍ତୀକୁ ଆଧାର କରି ଏଥିରେ ସେ ତୁଳନାତ୍ମକ ଭାବେ ଇତିହାସ ସହ ବିଶ୍ଳେଷଣ କରି ପ୍ରାଚୀନ ଉତ୍କଳର ଜଳଯାତ୍ରାର ଇତିହାସ ଲେଖିଛନ୍ତି । ଏହି ପୁସ୍ତକଟି ଅଧ୍ୟୟନ କଲେ ପ୍ରାବନ୍ଧିକଙ୍କ ପାଣ୍ଡିତ୍ୟ ଓ ବିଶ୍ଳେଷଣ ଶକ୍ତି ନିକଟରେ ପାଠକର ମଥା ନଇଁ ଆସେ । ବିଂଶ ଶତକର ଆଦ୍ୟ ପାଦରେ ସେ ପ୍ରବନ୍ଧ ରଚନା ପାଇଁ ଯେଉଁ ଶ୍ରମସ୍ୱୀକାର କରିଛନ୍ତି, ତାହା ତାଙ୍କର ଗଭୀର ଅନ୍ୱେଷା ଓ ବହୁ ଶାସ୍ତ୍ର ଜ୍ଞାନର ଦ୍ୟୋତକ । 'ପ୍ରାଚୀନ ଉତ୍କଳରେ ଜଳଯାତ୍ରା'ର ଇତିହାସ ଦେବା ପାଇଁ ସେ ଋଗ୍‌ବେଦ, Beal's Life of Hiuen Tsang, Cunningham's Geography of Ancient India, Indian Antiquiry ପତ୍ରିକା, ଓଡ଼ିଆରେ ପ୍ରକାଶିତ ବିଭିନ୍ନ ପାଲବନ୍ଧର ସାହାଯ୍ୟ ମଧ୍ୟ ନେଇଛନ୍ତି । ଉଚ୍ଚକୋଟିର ଗବେଷଣା ପୁସ୍ତକରୂପେ 'ପ୍ରାଚୀନ ଉତ୍କଳରେ ଜଳଯାତ୍ରା' ପୁସ୍ତକର ଗୁରୁତ୍ୱ ଯଶ ବିସ୍ମୃତ ହେବ ନାହିଁ । 'ପ୍ରାଚୀନ ଯାଜପୁର', 'ଯାଜପୁର', 'ବିରଜା,' ଏକ ତିନୋଟି ପ୍ରବନ୍ଧରେ ସେ ଯାଜପୁରର ଅତୀତ, ବର୍ତ୍ତମାନର ଏକ ତୁଳନାତ୍ମକ ଚିତ୍ର ଆଙ୍କିଛନ୍ତି । ଅତୀତର କୀର୍ତ୍ତିଭାସ୍ୱର ଯାଜପୁର ଆଜି ଅବହେଳିତ । ଏହାର ଧ୍ୱଂସାବଶେଷ ଉପରେ କିଏ ସୌଧ ନିର୍ମାଣ କରିଛି ତ, କେଉଁଠି ଏହା ରାଜପଥର ଧାରରେ ଲୋକମାନଙ୍କ ଗୋଡ଼ ମାଜିବାର ସାମଗ୍ରୀ ହୋଇଛି । ମନ୍ଦିରମାଳିନୀ ଐତିହାସିକ ପୀଠ ବୈତରଣୀ ତୀର୍ଥ ବିରଜା କ୍ଷେତ୍ରର ଦୁର୍ଦ୍ଦଶାରେ ପ୍ରାବନ୍ଧିକ ମ୍ରିୟମାଣ । ଏଇ ଧ୍ୱଂସାବଶେଷ, ବିଲୁପ୍ତ ଗରିମମୟୀ କୀର୍ତ୍ତିର ସଂରକ୍ଷଣ ପାଇଁ ପ୍ରାବନ୍ଧିକଙ୍କ ଆବେଗଭରା ଆହ୍ୱାନ, ଯଥାର୍ଥରେ ତାଙ୍କର ଇତିହାସ ଅନୁରାଗ ପ୍ରାଣର ସ୍ୱାକ୍ଷର ବହନ କରିଛି । 'କେଶରୀ ବଂଶ' ଏକ ଦୀର୍ଘ ପ୍ରବନ୍ଧ । ଏହି ପ୍ରବନ୍ଧଟିର ପ୍ରାସଙ୍ଗିକତା ସଂପ୍ରତି ଯେ ଆଉ ନାହିଁ, ଏହା ନିଃସଙ୍କୋଚରେ କୁହାଯାଇପାରେ । କାରଣ ସୋମବଂଶୀ ରାଜାମାନଙ୍କ ସମ୍ପର୍କରେ ଶିଳାଲେଖ, ତାମ୍ରଫଳକରୁ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ନୂତନ ତଥ୍ୟ ପ୍ରକାଶ କରିବା ପରେ ବିରୂପାକ୍ଷ କରଙ୍କ 'କେଶରୀବଂଶ' ପ୍ରବନ୍ଧଟିର ଆଉ କିଛି ବିଶେଷ ମୂଲ୍ୟ ନାହିଁ । କେବଳ 'ରାଜସିଂହ ଓ କେଶରୀବଂଶ' ପ୍ରବନ୍ଧଟି ତତ୍କାଳୀନ କଳା, ସ୍ଥାପତ୍ୟ ସମ୍ପର୍କରେ

ପାଠକଙ୍କୁ ଧାରଣା ଦେଇଥିବାରୁ ଏବେ ମଧ୍ୟ ଏହି 'ଗୁରୁତ୍ୱପୂର୍ଣ୍ଣ' ପ୍ରବନ୍ଧ ରୂପେ ଏହାର ମର୍ଯ୍ୟାଦା ରହିଛି । ବିରୂପାକ୍ଷ କରଙ୍କ ଏସବୁ ପ୍ରବନ୍ଧମାନଙ୍କରେ ଐତିହାସିକର କାଳସଚେତନତା, ଗବେଷକର ସନ୍ଧାନୀ ଦୃଷ୍ଟି, ସ୍ୱଦେଶପ୍ରେମୀର ଜାତି ପ୍ରତି ଶ୍ରଦ୍ଧା ଓ ସାହିତ୍ୟ ସାଧକର ରସିକତା ତଥା ସୌନ୍ଦର୍ଯ୍ୟବୋଧ ଫୁଟି ଉଠିଛି ।

ବିରୂପାକ୍ଷ କରଙ୍କ ପୌରାଣିକ ପରମ୍ପରା ଓ କିମ୍ବଦନ୍ତୀ ଆଶ୍ରୟରେ ରଚିତ ପ୍ରବନ୍ଧଗୁଡ଼ିକ ମଧ୍ୟରେ 'ଆଲୋଚନା', 'ମାଘ ଅମାବାସ୍ୟା', "ସରସ୍ୱତୀ ପୂଜା', 'ସୋମପୂଜା' ପ୍ରଧାନ । 'ଆଲୋଚନା' ପ୍ରବନ୍ଧଟି ଲୋକମାନଙ୍କରେ ପ୍ରଚଳିତ ଏକ ଲୋକପ୍ରିୟ କବିତାକୁ ଆଧାର କରି ରଚିତ । "ଆସେ ନୀଳାଦ୍ରି ବିହାରୀ, କଟକେ ଅଟକ ହେବାରୁ ମୋ ଧନ ସରୁନାହିଁ ଝୁରି ଝୁରି" ଏହି କବିତାଟିକୁ ନେଇ ସେ ବିଶ୍ଳେଷଣ କରି ଓଡ଼ିଆ ଜାତିର ଅତୀତ ଇତିହାସ ଆଲୋଚନା କରିଛନ୍ତି । 'ମାଘ ଅମାବାସ୍ୟା' ପ୍ରବନ୍ଧରେ ଓଡ଼ିଶାର ସାମରିକ ବିଭବ ସମ୍ପର୍କରେ ଅନେକ ଅବହେଳିତ ଅଧ୍ୟାୟ ଆଲୋଚନା କରାଯାଇଛି । ଓଡ଼ିଶାର ହୃଦବକ୍ଷିଳରେ ରହିଥିବା କ୍ଷତ୍ରିୟମାନଙ୍କ ଅତୀତ ବୀରତ୍ୱର ପୁନରୁଦ୍ଧାରଣ ପ୍ରାବନ୍ଧିକ ଏଥିରେ କରିଛନ୍ତି । ସରସ୍ୱତୀ ପୂଜାର ପରମ୍ପରା ସମ୍ପର୍କରେ ଏକ ପ୍ରାମାଣିକ ପ୍ରବନ୍ଧ ହେଉଛି 'ସରସ୍ୱତୀ ପୂଜା' । ସରସ୍ୱତୀଙ୍କ ପ୍ରାଚୀନତା ସମ୍ପର୍କରେ ସେ ବିଭିନ୍ନ ସୂଚନା ଦେଇ ଶେଷରେ ତାଙ୍କୁ ବୈଦିକ ଦେବୀ ଭାବରେ ଆଲୋଚନା କରିଛନ୍ତି । 'ସୋମପୂଜା' ପ୍ରବନ୍ଧରେ ପ୍ରାବନ୍ଧିକ ପ୍ରକୃତିରୁ କିପରି ବିଭିନ୍ନ ଦେବତା ସୃଷ୍ଟି ହୋଇଛନ୍ତି, ତାହା ସେ ଦର୍ଶାଇଛନ୍ତି । ଆର୍ଯ୍ୟମାନେ ପ୍ରକୃତିର ବିଭିନ୍ନ ପରିପ୍ରକାଶମାନଙ୍କୁ ଦେବତା ରୂପରେ ଆରାଧନା କରିଥାନ୍ତି । ତା'ର ଅନ୍ୟତମ ଆରାଧନା ହେଉଛି ସୋମପୂଜା ।

ପ୍ରାବନ୍ଧିକ ପୌରାଣିକ ପ୍ରସଙ୍ଗମାନଙ୍କ ଆଧାରରେ ଯେଉଁ ପ୍ରବନ୍ଧ ଲେଖିଛନ୍ତି, ସେ ପ୍ରବନ୍ଧଗୁଡ଼ିକରେ ଆମର ପରମ୍ପରା, ଚଳଣି ଓ ପ୍ରଚଳିତ ଲୋକଉକ୍ତି ସମ୍ପର୍କରେ ନାନା କଥା ରହିଛି । ସେ ଏ ସବୁର ଉପାଦାନ ନେଇ ତା'ର ଐତିହାସିକ ସ୍ୱରୂପ ପାଠକମାନଙ୍କୁ ଏଥିରେ ଦେଖାଇଛନ୍ତି । ଏସବୁ ପ୍ରବନ୍ଧରେ ସେ ପ୍ରାଚୀନ ପରମ୍ପରା ସହିତ ସାଂପ୍ରତିକ ଜନମାନସର ଏକ ସୁସମ୍ବନ୍ଧ ପ୍ରତିଷ୍ଠା କରିଛନ୍ତି । ଏ ଜାତିର ଲୁପ୍ତ ଐଶ୍ୱର୍ଯ୍ୟ ଓ ପ୍ରାଚୀନ ଗୌରବକୁ ଦେଖାଇବାରେ ଏ ଧରଣର ପ୍ରବନ୍ଧଗୁଡ଼ିକ ବହୁମାତ୍ରାରେ ସହାୟକ ହୋଇଛନ୍ତି ।

ବିରୂପାକ୍ଷ କର ଐତିହାସିକ ପ୍ରବନ୍ଧର ଲେଖକ ରୂପେ ଗୌରବ ଅର୍ଜନ କରିଥିଲେ ମଧ୍ୟ, ସେ ଯେ ସଂସ୍କୃତି-ସଚେତନ, ତାହା ତାଙ୍କର 'ଜାତି ବିଗ୍ରହ', 'ଆମ ସଂସ୍କୃତି', 'ଗୋପବନ୍ଧୁଙ୍କ ସମ୍ପର୍କରେ' ପ୍ରବନ୍ଧରୁ ପ୍ରମାଣ ମିଳେ । 'ଜାତି

ବିଗ୍ରହ' ଏକ ଦୀର୍ଘ ପ୍ରବନ୍ଧ । ଏହି ପ୍ରବନ୍ଧଟି ଧାରାବାହିକ ଭାବରେ ନବଭାରତ ପତ୍ରିକାରେ ପ୍ରକାଶ ପାଇଥିଲା । (୪) ଗାନ୍ଧିଜୀ ଯେଉଁ ସମୟରେ ଅସ୍ପୃଶ୍ୟତା ନିବାରଣ ପାଇଁ ଜାତିଧର୍ମର ଭେଦଭାବ ଭାଙ୍ଗି ସର୍ବଧର୍ମ ତଥା ଜାତିହୀନ ସମାଜର ପରିକଳ୍ପନା କରିଥିଲେ, ସେ ସମୟରେ ତାଙ୍କ ଆଦର୍ଶର ଏକାନ୍ତ ଅନୁକାରୀ ଭାବରେ ବିରୂପାକ୍ଷ କର ବାସ୍ତବ ଜୀବନରେ ଓ ଲେଖାରେ ଜାତିପ୍ରଥା ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ । ହରିଜନ ଗହଣରେ ଖାଇବା ଓ ଜାତିମାନଙ୍କ ଭିତରେ ରହିଥିବା ବିଭେଦର ତୋରଣକୁ ଅପସାରଣ କରିବାରେ ତାଙ୍କ ଭୂମିକା କିଛି କମ୍ ନୁହେଁ । ଜଣେ ନୈଷ୍ଠିକ ବ୍ରାହ୍ମଣ ହେଲେ ବି ସେ ଯାଜପୁରରେ ସବୁ ଜାତିର ଲୋକ ମେଳରେ ବସି ପଂକ୍ତିଭୋଜନ କରିଥିଲେ । ପୁଣି ତାଙ୍କର ପ୍ରସିଦ୍ଧ 'ଜାତିବିଗ୍ରହ' ପ୍ରବନ୍ଧରେ ସେ ଲେଖିଛନ୍ତି, "ଆଜି ସମାଜରେ ଯେଉଁ ଜାତି ବିଦ୍ୱେଷ ଭାରତକୁ ଛିନ୍ନଭିନ୍ନ କରୁଅଛି, ତାହାର ମୂଳ ଆମ୍ଭମାନଙ୍କର ଅବିବେକତା । ଆମ୍ଭମାନଙ୍କ ଶାସ୍ତ୍ର ଓ ପୁରାଣ ସବୁ ସତ୍ୟ ; କିନ୍ତୁ ଆମ୍ଭେମାନେ ସେଗୁଡ଼ିକର ପ୍ରକୃତ ଅର୍ଥ ନବୁଝି ଅଛୁ । ଯେଉଁମାନେ ଶାସ୍ତ୍ର ପୁରାଣର ଦୋହାଇ ଦେଇ ବୃଥାଭିମାନରେ ପରସ୍ପରକୁ ଘୃଣା କରନ୍ତି, ସେମାନେ ଯେବେ ପୁରାଣ ଶାସ୍ତ୍ର ଆଦିକୁ ସୁଚିନ୍ତିତ ଭାବରେ ବୁଝନ୍ତି, ଦେଖିବେ, ଆମ ସମାଜର ସବୁ ଜାତିର ଲୋକେ ଏକ ଜାତିର ଅନ୍ତର୍ଗତ ଓ ପ୍ରକୃତରେ ଭେଦଭାବବିହୀନ ।" (୫) ପ୍ରାବନ୍ଧିକଙ୍କ ଏ ଚିନ୍ତାଧାରାରେ ଜୀବନ ପ୍ରତି ଉଦାରତା, ସବୁ ଜାତି ପ୍ରତି ସମଦର୍ଶୀଭାବ ଓ ମଣିଷ ପ୍ରତି ଶ୍ରଦ୍ଧା ପ୍ରକାଶ ପାଇଛି । ସଂସ୍କୃତି ପ୍ରତି ପ୍ରାବନ୍ଧିକଙ୍କ ଦୃଷ୍ଟିକୋଣ 'ଆମ ସଂସ୍କୃତି'ରେ ସାର୍ଥକ ରୂପେ ପ୍ରକାଶିତ । ସଂସ୍କୃତିକୁ ପ୍ରାଚୀନ ଐତିହ୍ୟ ଓ କୀର୍ତ୍ତିର ଧ୍ୱଜା ଭାବରେ ଗ୍ରହଣ ନ କରି ଏହାକୁ ମାନବିକ ଚଳଣିର ସୂଚୀପତ୍ର ରୂପେ ପ୍ରାବନ୍ଧିକ ତାଙ୍କର ଏହି ପ୍ରବନ୍ଧରେ ବିଚାର କରିଛନ୍ତି । ସୁତରାଂ ପ୍ରାବନ୍ଧିକଙ୍କ ମତରେ ସଂସ୍କୃତି ହେଉଛି ଦେଶ ବା ଜାତିର ସର୍ବାଙ୍ଗୀନ ବିକାଶର ଇତିହାସ । ସମାଜର ଗଠନ ଓ ସୁରକ୍ଷଣ ବିକାଶେ ଯେଉଁ ସମୟରେ ଯେଉଁସବୁ ନିୟମ, ଧର୍ମନୀତି, ରାଜନୀତି, ଅର୍ଥନୀତି ପ୍ରଚଳିତ, ସଂସ୍କୃତି, ଅନେକାଂଶରେ ତା'ର ଭିତରେ ପ୍ରତିଫଳିତ । ସଂସ୍କୃତିକୁ ଏପରି ବିଶ୍ଳେଷଣ ଦ୍ୱାରା ତାହା ଯେ ଜୀବଧର୍ମୀ ହୋଇଛି, ଏଥିରେ ସନ୍ଦେହ ନାହିଁ ।

---

(୪) ନବଭାରତ- ୧/୧୧, ୨/୧, ୨/୩, ୨/୬-୭, ୨/୧୨ ସଂଖ୍ୟାମାନଙ୍କରେ ଏହା ପ୍ରକାଶିତ ।

(୫) ନବଭାରତ-୨/୧୨-ପୃ : ୭୩୮ ।

'ଗୋପବନ୍ଧୁଙ୍କ ସମ୍ପର୍କରେ' ଏକ କ୍ଷୁଦ୍ର ପ୍ରବନ୍ଧ । ବିବେକାନନ୍ଦଙ୍କ ଆଦର୍ଶ, କର୍ମ, କୃତିତ୍ୱ ଓ ଜୀବନଦୃଷ୍ଟି ସହିତ ଗୋପବନ୍ଧୁଙ୍କୁ ସେ ତୁଳନାତ୍ମକ ଭାବରେ ଏହି ପ୍ରବନ୍ଧଟିରେ ବିଚାର କରିଛନ୍ତି । ଗୋପବନ୍ଧୁଙ୍କୁ ଜଣେ ମହାପୁରୁଷ ଭାବରେ ବିଶ୍ଳେଷଣ କରିବାରେ ତାଙ୍କର ସ୍ୱାତନ୍ତ୍ର୍ୟ ଏହି ପ୍ରବନ୍ଧଟିରେ ପରିଲକ୍ଷିତ ।

ବିରୂପାକ୍ଷ ସଂସ୍କୃତି ସମ୍ବନ୍ଧୀୟ ପ୍ରବନ୍ଧମାନଙ୍କରେ ସଂସ୍କୃତିକୁ ଅପସଂସ୍କୃତି କବଳରୁ ରକ୍ଷା କରିବା ପାଇଁ ଆହ୍ୱାନ ଦେଇଛନ୍ତି । ସମାଜକୁ ଧର୍ମ, ଜାତି ନାମରେ ଚଳିଥିବା କୁସଂସ୍କାରର ଅର୍ଗଳକୁ ଅତିକ୍ରମ କରିବା ପାଇଁ ସେ ଶାସ୍ତ୍ର, ଯୁକ୍ତିର ବ୍ୟାଖ୍ୟା ଦେଇ କେତେ କଥା କହିଛନ୍ତି । ଏକ ସୁସ୍ଥ ମାନବବାଦୀ ସମାଜର ପରିକଳ୍ପନାରେ ବିଭୋର ହୋଇ ସେ ଏପରି ପ୍ରସଙ୍ଗମାନଙ୍କର ଅବତାରଣା ତାଙ୍କ ପ୍ରବନ୍ଧମାନଙ୍କରେ କରିଛନ୍ତି ।

ବିରୂପାକ୍ଷ କରଙ୍କ ପ୍ରବନ୍ଧଗୁଡ଼ିକର ରଚନାଶୈଳୀ ପାଠକକୁ ପ୍ରଭାବିତ କରେ । ସେ ଯୁକ୍ତିନିଷ୍ଠ ଭାବରେ ଶାସ୍ତ୍ର ପ୍ରମାଣ ଦେଇ ଗଦ୍ୟ ଲେଖିଛନ୍ତି । ବିଶ୍ଳେଷଣ ଦ୍ୱାରା ସେ ତାଙ୍କର ଚିନ୍ତାକୁ ପାଠକର ସମୀପବର୍ତ୍ତୀ କରିଛନ୍ତି । ବିଷୟ ନିର୍ବାଚନରେ ପ୍ରାସଙ୍ଗିକତା, ପରିବେଷଣରେ ପ୍ରାଞ୍ଜଳତା ତାଙ୍କ ଗଦ୍ୟକୁ ସୁଖପାଠ୍ୟ କରିଛି । ତା'ଛଡ଼ା ସେ ଅପୂର୍ବ ବିଶ୍ଳେଷଣଶକ୍ତିର ପରିଚୟ ତାଙ୍କ ପ୍ରବନ୍ଧମାନଙ୍କରେ ଦେଇଛନ୍ତି । ଶିଷ୍ଟରୀତିରେ ବିଦ୍ରୂପ କରିବାରେ ତାଙ୍କର ମଧ୍ୟ କୁଣ୍ଠା ନଥିଲା । ଏଠାରେ ତାଙ୍କ ଗଦ୍ୟର ନମୁନା ସ୍ୱରୂପ 'ଆମ ସଂସ୍କୃତି'ରୁ କିୟଦଂଶ ଉଦ୍ଧାର କରାଯାଇପାରେ । ସେଥିରେ ସେ ଲେଖିଛନ୍ତି—ବୃକ୍ଷରୋପଣ ଓ ଜଳାଶୟ ଖନନ ଆମର ପ୍ରାଚୀନ ସଂସ୍କୃତି । ଲୋକେ, କେବଳ ନିଜ ପାଇଁ ନିଜ ଜମିରେ ନୁହେଁ, ସମସ୍ତଙ୍କ ପାଇଁ ସର୍ବସାଧାରଣ ଜମିରେ ପୁଣ୍ୟକର୍ମ ଜ୍ଞାନରେ ଫଳବୃକ୍ଷରୋପଣ କରୁଥିଲେ ଓ ଜଳାଶୟ ଖନନ କରୁଥିଲେ । ପ୍ରଥମ ଫଳ ଧାରଣ କଲାପରେ ସଙ୍କାବିଧିରେ ବୃକ୍ଷର ପୂଜା କରାଯାଇ ପ୍ରଥମ ଫଳକୁ ବଣ୍ଟନ କରାଯାଉଥିଲା । ତଦ୍ରୂପ ମଧ୍ୟ ଶାସ୍ତ୍ରୀୟ ନିୟମରେ ଜଳାଶୟ ପ୍ରତିଷ୍ଠା କରାଯାଇ ତାହା ବ୍ୟବହୃତ ହେଉଥିଲା । ସଂସ୍କୃତି ପ୍ରତି ଆଦର ହ୍ରାସ ହେବା ସଙ୍ଗେ ସଙ୍ଗେ ଆଜି ଫଳବୃକ୍ଷର ଅବାଧ ଛେଦନ ହେଉଛି, ଅଥଚ କେହି ବୃକ୍ଷରୋପଣ ପାଇଁ ଆଗ୍ରହୀ ନୁହନ୍ତି । ସଂସ୍କୃତିର ବିଳୟ ହେଲେ ସାମୟିକ ବୃକ୍ଷରୋପଣ ସପ୍ତାହ ପାଳନ କରିବା ପାଇଁ ଲୋକଙ୍କୁ ଉପଦେଶ ଦେବାଦ୍ୱାରା ପୂର୍ବାବସ୍ଥା ଫେରି ଆସିବା ଅସମ୍ଭବ ମନେହୁଏ ।" (ଉତ୍କଳରେ ବୌଦ୍ଧଯୁଗର ଇତିହାସ ଓ ଅନ୍ୟାନ୍ୟ ପ୍ରବନ୍ଧ, ପୃ ୫୯) ପ୍ରାବନ୍ଧିକଙ୍କ ଗଦ୍ୟ କେତେକାଂଶରେ ଉଦ୍‌ବୋଧନଧର୍ମୀ । ସେ ପାଠକକୁ ଶିକ୍ଷା ଦେବା ପରି ସ୍ୱରରେ

ବାରମ୍ବାର ତାଙ୍କ ବକ୍ତବ୍ୟକୁ ବୁଝାଇଛନ୍ତି । ପ୍ରବନ୍ଧଗୁଡ଼ିକରେ ସେ ଆବଶ୍ୟକସ୍ଥଳେ ଶାସ୍ତ୍ରରୁ ଉଦ୍ଧୃତ ଦେବା ସଙ୍ଗେ ସଙ୍ଗେ ଲୋକପ୍ରସିଦ୍ଧ ଉକ୍ତିମାନଙ୍କୁ ମଧ୍ୟ ଉଦ୍ଧାର କରିଛନ୍ତି । ଭାଷା ପ୍ରୟୋଗରେ ପ୍ରାବନ୍ଧିକ ଯଥାସମ୍ଭବ କ୍ଲିଷ୍ଟ ଶବ୍ଦ ପରିହାର କରିଥିଲେ ମୁଦ୍ଧା ସାଧୁଶବ୍ଦର ସାର୍ଥକ ବ୍ୟବହାରର ପ୍ରଲୋଭନକୁ ଏଡ଼ାଇ ପାରିନାହାନ୍ତି । ଫଳରେ ତାଙ୍କ ପ୍ରବନ୍ଧରେ ଲୌକିକ ଭାଷାର ଊର୍ଦ୍ଧ୍ୱସ୍ତରର ଏକ ଶିକ୍ଷକସୁଲଭ ଭାଷା ଦେଖିବାକୁ ମିଳେ ।

୩

ବିଂଶ ଶତକର ପ୍ରଥମ ପର୍ଯ୍ୟାୟରେ ହରିପାଷକର ଐତିହାସିକ ପ୍ରବନ୍ଧ ରଚନାରେ ମନୋନିବେଶ କରିଥିଲେ । ସେତେବେଳକୁ ପରମାନନ୍ଦ ଆଚାର୍ଯ୍ୟ, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଏ ଦିଗରେ ଧ୍ୟାନ ଦେଇ ନ ଥିଲେ । କେବଳ ଜଗନ୍ନାଥମର୍ଦ୍ଦି ଆଚାର୍ଯ୍ୟ ହେକାଲରେ ଐତିହାସିକ ପ୍ରବନ୍ଧ ଲେଖୁଥିଲେ । ଓଡ଼ିଶା ଇତିହାସ ସମ୍ପର୍କରେ ବିଶେଷ କିଛି ଉପାଦାନ ହରିପାଷକରଙ୍କ ଆଗରେ ନଥିଲା । ତଥାପି ସେ ସ୍ୱଳ୍ପସଂଖ୍ୟକ କିମ୍ବଦନ୍ତୀ, କେତେକ ପ୍ରାଚୀନ ଗ୍ରନ୍ଥଙ୍କୁ ଆଧାର କରି ଯେଉଁଭଳି ଭାବରେ ପ୍ରବନ୍ଧ ଲେଖିଛନ୍ତି ତାହା ତାଙ୍କର ତୀକ୍ଷ୍ଣ ଧୀଶକ୍ତି ଓ ପ୍ରତିଭାର ପରିଚାୟକ । ସେ ଇତିହାସକୁ କେବେହେଲେ ନଗ୍ନ ରୂପରେ ଦେଖି ନାହାନ୍ତି । ଇତିହାସକୁ ପ୍ରାଣବନ୍ତ କରିବା ପାଇଁ ତା' ଭିତରେ ଚିରନ୍ତନ ମାନବର ଜୀବନସତ୍ତା ସନ୍ଧାନ କରିଛନ୍ତି । ସେ ଇତିହାସ ଭିତରେ ମାନବାତ୍ମାର ସନ୍ଧାନ କରିଥିଲେ ଓ ମଣିଷର ପ୍ରକୃତ ମୂଲ୍ୟ ବୁଝିଥିଲେ । ସେଥିପାଇଁ ଏବେ ମୁଦ୍ଧା ସେ ସ୍ମରଣକୁ ଆସନ୍ତି । ତାଙ୍କ ପ୍ରବନ୍ଧଗୁଡ଼ିକୁ ପାଠକଲେ R. G. Collingwoodଙ୍କ ଉକ୍ତିଟି ବାରମ୍ବାର ମନକୁ ଆସେ । ତାହା ହେଉଛି, "The value of history, then is that it teaches us what man has done and thus what man is." (The Idea of History 1st Indian Impression—1985] page-10 )

—※—

# ପ୍ରାବନ୍ଧିକ ରାମଚନ୍ଦ୍ର ଆଚାର୍ଯ୍ୟ

ବିଂଶ ଶତକର ଆଦ୍ୟପାଦରେ 'ଉତ୍କଳ ସାହିତ୍ୟ' ପତ୍ରିକାରେ ବହୁ ବିକ୍ଷିପ୍ତ ପ୍ରବନ୍ଧର ଆବିର୍ଭୂତା ରାମଚନ୍ଦ୍ର ଆଚାର୍ଯ୍ୟଙ୍କୁ ଜଣେ ପ୍ରାବନ୍ଧିକ ରୂପେ ଏଯାବତ୍ ମୂଲ୍ୟାୟନ କରାଯାଇନାହିଁ । ମାତ୍ର ଅଣତିରିଶ ବର୍ଷ ଜୀବନକାଳ ଭିତରେ ପରିମାଣ ଓ ରଚନାବୈଚିତ୍ର୍ୟ ଦୃଷ୍ଟିରୁ ତାଙ୍କ ସାଧନା ଯଥାର୍ଥରେ ଓଡ଼ିଆ ସାହିତ୍ୟରେ ବିସ୍ମୟକର । ମନନଶୀଳ ପ୍ରବନ୍ଧ ରଚନାରେ ସେ ଥିଲେ ଜଣେ ଅସାମାନ୍ୟ ଶିଳ୍ପୀ । ପ୍ରାଚୀନ ଭାରତର ଶିକ୍ଷା, ସଂସ୍କୃତି, ସଭ୍ୟତା, ଧର୍ମ, ଦର୍ଶନ, ସମାଜ ପ୍ରଭୃତି ପ୍ରସଙ୍ଗକୁ ଆଧାର କରି ପ୍ରବନ୍ଧ ରଚନାରେ ତାଙ୍କ ସମଧର୍ମୀ ପ୍ରାବନ୍ଧିକ ଓଡ଼ିଆ ସାହିତ୍ୟରେ କ୍ୱଚିତ୍ ପରିଲକ୍ଷିତ । ଏପରି ଏକ ପ୍ରସିଦ୍ଧ ପ୍ରାବନ୍ଧିକଙ୍କ କୃତି-ଗୁଡ଼ିକ ପୁସ୍ତକ ଆକାରରେ ସଂକଳିତ ହୋଇନଥିବାରୁ ଆଲୋଚକମାନେ ତାଙ୍କ କୃତିତ୍ୱ ଆକଳନ ସକାଶେ ବିଶେଷ ପ୍ରୟାସ କରିନାହାନ୍ତି ।

ରାମଚନ୍ଦ୍ର ଆଚାର୍ଯ୍ୟ ଥିଲେ ଜଣେ ଐତିହ୍ୟସଚେତନ ପ୍ରାବନ୍ଧିକ । ବିଂଶ ଶତକର ଆଦ୍ୟପାଦରେ ଓଡ଼ିଆ ସାହିତ୍ୟରେ ଏ ଧରଣର ପ୍ରବନ୍ଧ ରଚନାରେ ତାରିଣୀ ଚରଣ ରଥ, କୃପାସିନ୍ଧୁ ମିଶ୍ର, ବିଶ୍ୱନାଥ କର, ଚିନ୍ତାମଣି ଆଚାର୍ଯ୍ୟ, ଜଗବନ୍ଧୁ ସିଂହ ପ୍ରମୁଖ ମନୋନିବେଶ କରିଥିଲେ । ସେ ସମୟରେ ଆମ ପୁରାଣ ଓ ଇତିହାସକୁ ନେଇ ଜାତୀୟ ଭାବୋଦ୍ଦୀପକ ପ୍ରବନ୍ଧ ରଚନା ପାଇଁ ଏକ ପ୍ରେରଣାମୟ ବାତାବରଣ ସୃଷ୍ଟି ହୋଇଥିଲା । 'ଉତ୍କଳ ସମ୍ମିଳନୀ' (୧୯୦୩), 'ସତ୍ୟବାଦୀ ବନବିଦ୍ୟାଳୟ' (୧୯୦୯)ର ଅନୁପ୍ରେରଣା ଏ ସକାଶେ ଅନେକାଂଶରେ ଦାୟୀ । ଏ ଜାତିର ଇତିହାସ ଓ ମହାନ୍ ପରମ୍ପରା ସଂପର୍କରେ ଧାରଣା ଦେଇ ତରୁଣମାନଙ୍କୁ ଉଦ୍‌ବୁଦ୍ଧ କରିବା ଥିଲା ସେ ସମୟର ଅଧିକାଂଶ ଲେଖକଙ୍କର ଉଦ୍ଦେଶ୍ୟ । ଊନବିଂଶ ଶତକର ଶେଷପାଦରେ ଆମର ପଡ଼ୋଶୀ ବଙ୍ଗ ସାହିତ୍ୟରେ ମଧ୍ୟ ଏହି ଜାତୀୟ ପ୍ରବନ୍ଧର ଧାରା ପରିଲକ୍ଷିତ । ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର, ଅକ୍ଷୟ କୁମାର ଦତ୍ତ, ରାଜେନ୍ଦ୍ର ଲାଲ ମିତ୍ର, ଭୂଦେବ ମୁଖୋପାଧ୍ୟାୟ, ବଙ୍କିମ ଚନ୍ଦ୍ର ଚାଟାର୍ଜୀ, ହରପ୍ରସାଦ ଶାସ୍ତ୍ରୀ ପ୍ରମୁଖ ଭାରତର ଧର୍ମ, ଦର୍ଶନ, ଇତିହାସ, ସଭ୍ୟତା ଇତ୍ୟାଦିକୁ ନେଇ ତତ୍କାଳରେ ବଙ୍ଗଳାରେ ପ୍ରବନ୍ଧ ରଚନା କରି କୃତିତ୍ୱ

ଅର୍ଜିଥିଲେ । ଏତିକି ବେଳେ ଭାରତର ଶିକ୍ଷିତ ସମାଜ ଉପରେ ରାମକୃଷ୍ଣ ପରମହଂସ ଓ ବିବେକାନନ୍ଦଙ୍କ ବୈଦାନ୍ତିକ ମତବାଦ, କେଶବଚନ୍ଦ୍ର ସେନ୍‌ଙ୍କ 'ବ୍ରହ୍ମଭବନ।' ଦୟାନନ୍ଦ ସରସ୍ୱତୀଙ୍କ 'ଆର୍ଯ୍ୟ ସମାଜ' ଓ ମହାଦେବ ଗୋବିନ୍ଦ ରାନାଡ଼େଙ୍କ 'ପ୍ରାର୍ଥନା ସମାଜ' ବିଶେଷ ପ୍ରଭାବ ପକାଇଥିଲା । ଏମାନେ ଭାରତର ସଂସ୍କୃତି, ଭାରତର ଇତିହାସ ଓ ଭାରତର ବେଦ-ଉପନିଷଦ ମାନଙ୍କରୁ ଦୃଷ୍ଟାନ୍ତ ଦେଇ ପ୍ରାଚୀନ ପରମ୍ପରା ଭିତ୍ତିରେ ନୂତନ ଭାରତ ଗଠନର ସ୍ୱପ୍ନ ଦେଖିଥିଲେ । ମତବାଦର ବିଭିନ୍ନତା ସତ୍ତ୍ୱେ, ଏମାନେ ସମସ୍ତେ ଭାରତକୁ ବିଶ୍ୱସଂସ୍କୃତି ଓ ବିଶ୍ୱମାନବର ପୁଣ୍ୟ ମିଳନପୀଠ ଭାବରେ ସ୍ୱୀକାର କରିଥିଲେ । ପ୍ରାଚୀନ ଭାରତର ମେଧାବୀ-ଦୃଷ୍ଟି ଦ୍ୱାରା ସଚେତନ ହୋଇ ସାହିତ୍ୟ ସାଧନା କରିବା ସକାଶେ ଏମାନେ ତରୁଣ-ମାନଙ୍କୁ ଯଥେଷ୍ଟ ଉତ୍ସାହ ଦେଇଥିଲେ । ଆପଣାର ଜୀବନ ଓ ସାହିତ୍ୟ ଭିତରେ ପ୍ରାଚୀନ ଭାରତର ମହାନତାକୁ ଚିହ୍ନି ପ୍ରତିଷ୍ଠିତ କରିଇବାରେ ଏ ସମୟରେ ସାହିତ୍ୟିକ ଆପଣାକୁ କୃତାର୍ଥ ମଣୁଥିଲା । ଭାରତୀୟ ଋଷିମାନଙ୍କ ଭିତ୍ତିରେ ଭାରତ ବର୍ଷର ମୁଗ୍ଧ ବନ୍ଦନା ଗାଇବାରେ ଏ କାଳର ଲେଖକମାନେ ଥିଲେ ପାରଙ୍ଗମ । ରାମଚନ୍ଦ୍ର ଆଚାର୍ଯ୍ୟ ଆମ ଓଡ଼ିଆ ସାହିତ୍ୟରେ ଥିଲେ ଏହି ପରମ୍ପରାର ଜଣେ ସାର୍ଥକ ଲେଖକ । ତାଙ୍କର ପ୍ରବନ୍ଧଗୁଡ଼ିକ ଭାରତୀୟ ପ୍ରାଚୀନତାକୁ ଆଧାର କରି ରଚିତ ।

ଭାରତର ପ୍ରାଚୀନ ବିଭବକୁ ପ୍ରାବନ୍ଧିକ ଅନ୍ତରଙ୍ଗ ଭାବରେ ଭଲ ପାଉ-ଥିଲେ । ପ୍ରାଚୀନ ଭାରତର ଜ୍ଞାନ-ବିଜ୍ଞାନ ସହିତ ତାଙ୍କର ବେଶ ଆତ୍ମୀୟତା ଥିଲା । ଅତୀତରେ ଭାରତ ଥିଲା ଐଶ୍ୱର୍ଯ୍ୟଶାଳିନୀ, ବିଦ୍ୟାରତ୍ନ ଧାରିଣୀ, କୀର୍ତ୍ତିକଳାପିନୀ ଓ ଶୋଭାବିଳାସିନୀ—ଏକଥାଟିକୁ ସେ ବାରମ୍ବାର ତାଙ୍କ ପ୍ରବନ୍ଧମାନଙ୍କରେ ଆମକୁ ସୂଚାଇ ଦେଇଛନ୍ତି । ସଂକ୍ଷେପରେ କହିଲେ ଅତୀତ ଭାରତର ପ୍ରାଣ ଥିଲା, ଶକ୍ତି ଥିଲା ଓ ସବୁକିଛି ଥିଲା ବୋଲି ସେ କହିବାକୁ କୁଣ୍ଠାବୋଧ କରିନାହାନ୍ତି । ପୁଣି ସେ କହନ୍ତି, "ସେ ଦିନ ଆଉ ନାହିଁ । ଭାରତରେ ବର୍ତ୍ତମାନ ଅତୀତ ଯୁଗର ସେ ଉଦ୍‌ଯୋଗ ନାହିଁ, ସେ ସ୍ଫୂର୍ତ୍ତି ନାହିଁ, ସେ ପ୍ରଫୁଲ୍ଲତା, ସେ ରସ ନାହିଁ—ସେ ସବୁ କିଛି ନାହିଁ । ଅଛି କେବଳ ଜ୍ଞାନର ମାୟା, ବିଜ୍ଞାନର ଭ୍ରାନ୍ତି, ସଭାର ଆଡ଼ମ୍ବର ଏବଂ ବକ୍ତୃତାର ବିଡ଼ମ୍ବନା । ବର୍ତ୍ତମାନ ଭାରତବାସୀଙ୍କ ଅବସ୍ଥା ଶୋଚନୀୟ କହିଲେ ଚଳେ ।" (୧)ଏ ସବୁରୁ ପ୍ରାବନ୍ଧିକଙ୍କର ଅତୀତ ପ୍ରତି ପ୍ରବଳ ମୋହ ଥିବା

୧ । ଉତ୍କଳ ସାହିତ୍ୟ—୨୭ଶ/୫ମ ସଂଖ୍ୟା, ପ୍ରାଚୀନ ଭାରତର ପ୍ରଜାତନ୍ତ୍ର ଶାସନ—ପୃ-୧୮୫

କଣାପଡ଼େ । ଅତୀତର ଯାହା କିଛି ସବୁ ସୁନ୍ଦର, ସବୁ ଉଚ୍ଚକୋଟିର ଏପରି ଧାରଣା ତାଙ୍କର ରହିଥିଲା । ପ୍ରାବନ୍ଧିକଙ୍କର ଅତୀତ ପ୍ରତି ରହିଥିବା ଏଭଳି ଆନ୍ତରିକତାକୁ ଦେଖିବାଦ୍ବାରା ସ୍ୱତଃ Oliver Golds mithଙ୍କ ଅତୀତ-ପ୍ରୀତି ଭାବନା ମନକୁ ଆସେ । ତାହା ହେଲା, "I love everything that's old : old friends, old times, old manners, old books, old wines, " ( She stoops to conquer ) ପ୍ରାବନ୍ଧିକ ଆଗ୍ରହୀ ଅତୀତ ଭାରତର ସବୁକିଛି · ଜ୍ଞାନ, ବିଜ୍ଞାନ, ସଭ୍ୟତା, ଧର୍ମ, ଶିକ୍ଷା, ନୀତି ପ୍ରଭୃତିକୁ ତାଙ୍କ ପ୍ରବନ୍ଧମାନଙ୍କରେ ଆଦର୍ଶସ୍ଥାନୀୟ ରୂପେ ଗ୍ରହଣ କରିଥିଲେ । ଭାରତ ସମ୍ପର୍କରେ କିଛି ଅଧ୍ୟୟନ କରିବାକୁ ହେଲେ, ଏହାର ପ୍ରାଚୀନ ଗୌରବ ଅନୁଶୀଳନ ଅପରିହାର୍ଯ୍ୟ ବୋଲି ତାଙ୍କର ଧାରଣା ଥିଲା । ଏଥିପାଇଁ ସେ ତାଙ୍କ ପ୍ରବନ୍ଧମାନଙ୍କରେ ଭାରତର ଆତ୍ମାକୁ ତା'ର ପ୍ରାଚୀନ ବିଭବ ଭିତରେ କେବଳ ଅନୁସନ୍ଧାନ କରିଛନ୍ତି ।

ଭାବବସ୍ତୁ ଦୃଷ୍ଟିରୁ ତାଙ୍କ ପ୍ରବନ୍ଧଗୁଡ଼ିକୁ ମୁଖ୍ୟତଃ ତିନିଭାଗରେ ବିଭକ୍ତ କରାଯାଇପାରେ ।

**(କ) ପ୍ରାଚୀନ ଭାରତର ଇତିହାସ ଓ ସଂସ୍କୃତି ଉପରେ ଆଧାରିତ ପ୍ରବନ୍ଧ ।**

ଏହି ପର୍ଯ୍ୟାୟର ପ୍ରବନ୍ଧଗୁଡିକ ମଧ୍ୟରେ 'ଭାରତୀୟ ଚିତ୍ରକଳା,' 'ପ୍ରାଚୀନ ଭାରତର ଯୁଦ୍ଧସାମଗ୍ରୀ', 'ପ୍ରାଚୀନ ଓ ମଧ୍ୟଯୁଗୀୟ ଭାରତରେ ଲୋକ ଶିକ୍ଷା', 'ପ୍ରାଚୀନ ଭାରତର କାଠ ସମସ୍ୟା, ଦକ୍ଷିଣ ଭାରତର ସମତପ୍ରିୟ କାଠ-ହିକଳ', 'ମୁସଲମାନ ଭାରତର ସମର ନୀତି', 'ଭାରତର ମହାପୁରୁଷଗଣ', 'ପ୍ରାଚୀନ ଭାରତରେ ସଭ୍ୟତା-ବିକାଶ', 'ପ୍ରାଚୀନ ଭାରତର ବିଶ୍ୱବିଦ୍ୟାଳୟ', 'ପ୍ରାଚୀନ ଭାରତର ନଗର ବିନ୍ୟାସ ପ୍ରଣାଳୀ', 'ପ୍ରାଚୀନ ଭାରତର ବିବିଧ ପାଠ୍ୟ ବିଷୟ', 'ପ୍ରାଚୀନ ଭାରତ ଓ ଗ୍ରୀସ୍', 'ପ୍ରାଚୀନ ଭାରତର ସୈନ୍ୟ ଓ ସମରସଜ୍ଜା' 'କଳିଙ୍ଗ ଆର୍ଯ୍ୟ ସଭ୍ୟତାର ପ୍ରାଚୀନତା', 'ଭାରତର ମହାପୁରୁଷ ଗଣ', 'ପ୍ରାଚୀନ ଭାରତର ପ୍ରଜାତନ୍ତ୍ର ଶାସନ' ପ୍ରଭୃତି ପ୍ରଧାନ । ପ୍ରାଚୀନ ଭାରତର ସଂସ୍କୃତି ଓ ଇତିହାସ ସମ୍ପର୍କରେ ଏତେଗୁଡ଼ିଏ ପ୍ରବନ୍ଧ ଲେଖିବା ମୂଳରେ ତାଙ୍କର ଏକ ମହତ୍ତ୍ୱ ଅଭିମୁଖ୍ୟ ଥିଲା । ସେ ସମୟରେ ଓଡ଼ିଶା ଥିଲା ବ୍ରିଟିଶ୍ ଶାସକର ଶାସନାଧୀନ ଓ ସେତେବେଳକୁ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶର ଗୌରବ ଲାଭ କରି ନ ଥିଲା । ଓଡ଼ିଆ ଭାଷାଭାଷୀ ଲୋକମାନେ ସେ ସମୟରେ ବିଭିନ୍ନ ପ୍ରଦେଶରେ

ବିଚ୍ଛିନ୍ନ ହୋଇ ରହିଥିଲେ । ପାଶ୍ଚାତ୍ୟ ଆଶ୍ରିତ ଶିକ୍ଷା, ସଭ୍ୟତାର ଗ୍ଳାନିରୁ ଏ ଜାତିର ଆତ୍ମମର୍ଯ୍ୟାଦା ରକ୍ଷା ସକାଶେ ସେ ଓଡ଼ିଆମାନଙ୍କୁ ତତ୍କାଳରେ ଭାରତର ପ୍ରାଚୀନ ସଂସ୍କୃତି ଓ ପରମ୍ପରା ସମ୍ପର୍କରେ ଶିକ୍ଷାଦେବାକୁ ଉଚିତ ମଣିଥିଲେ । ଭାରତର ଏକ ବୃହତ୍ତର ସାଂସ୍କୃତିକ ପରିବେଶ ଭିତରେ ଓଡ଼ିଆମାନେ ଆପଣାକୁ ଚିହ୍ନନ୍ତୁ, ଏହା ଥିଲା ତାଙ୍କର ଲକ୍ଷ୍ୟ । ସେ ପ୍ରାଚୀନ ଭାରତର ଶିକ୍ଷା, ସଭ୍ୟତା ଓ ସାମରିକ ଜୀବନ ପ୍ରଭୃତିର ଆଲୋଚନା କଲାବେଳେ ଓଡ଼ିଆମାନଙ୍କର ଯେ ଏସବୁ ମଧ୍ୟରେ ଏକ ସମ୍ମାନଜନକ ଆସନ ଥିଲା, ଏ କଥା ଆମକୁ ଶୁଣାଇ ଦେଇଛନ୍ତି । ସେ ଏ ସମ୍ପର୍କରେ ଲେଖିଛନ୍ତି, "ଦକ୍ଷିଣ ଭାରତର ସମରପ୍ରିୟ ଜାତିମାନଙ୍କ ମଧ୍ୟରେ ଓଡ଼ିଆମାନଙ୍କ ନାମ ପ୍ରଥମ ଉଲ୍ଲେଖଯୋଗ୍ୟ । ପ୍ରାଚୀନ କାଳରେ ଓଡ଼ିଆ ଜାତି ଶିଳ୍ପ, ବାଣିଜ୍ୟ, ସାହିତ୍ୟ ପ୍ରଭୃତିରେ ଅନ୍ୟାନ୍ୟ ଭାରତୀୟ ଜାତି ମଧ୍ୟରେ ଯେପରି ପ୍ରାଧାନ୍ୟ ଲାଭ କରିଥିଲା, ସୈନିକ ବିଭାଗରେ ମଧ୍ୟ ସେହିପରି ଖ୍ୟାତି ଅର୍ଜନ କରିପାରିଥିଲା । ରାଜପୁତ୍ର, ଗୁର୍ଖା, ଶିଖ, ମହାରଟ୍ଟା ପ୍ରଭୃତି ସୈନ୍ୟତୁଲ୍ୟ ସଂଖ୍ୟାରେ ଅଧିକ ନ ହେଲେହେଁ ଓଡ଼ିଆଜାତି ପୂର୍ବକାଳୀନ ଅନେକ ଯୁଦ୍ଧ କ୍ଷେତ୍ରରେ ଯେ ଅପୂର୍ବ ସାମରିକ ସ୍ଫୂର୍ତ୍ତି, ସାହସ, ଜାତ୍ୟାଭିମାନ, ଉତ୍ସାହ ଓ ବୀରତ୍ୱର ପରାକାଷ୍ଠା ପ୍ରଦର୍ଶନ କରିଥିଲା, ଇତିହାସହିଁ ତାହାର ସାକ୍ଷୀ । ପ୍ରାଚୀନ ଓଡ଼ିଶାର ରାଜାମାନଙ୍କ ଅଧୀନରେ ବହୁସଂଖ୍ୟକ ପାଇକ ବା ସଶସ୍ତ୍ର ଅନୁଚର ଥିଲେ । ଯୁଦ୍ଧ ସେମାନଙ୍କର କର୍ତ୍ତବ୍ୟ ରୂପେ ପରିଗଣିତ ହେଉଥିଲା । ଏକା ଗଞ୍ଜାମରେ ପ୍ରାୟ ସତାବନ ହଜାର ପାଇକ ଥିଲେ । ସେମାନେ ଅସିଚାଳନା, ବନ୍ଧୁକ ବ୍ୟବହାର, ଅଶ୍ୱାରୋହଣ ଇତ୍ୟାଦି ବିବିଧ ଯୁଦ୍ଧକାର୍ଯ୍ୟରେ ବିଲକ୍ଷଣ ନିପୁଣ ଥିଲେ ।" (୧) ପ୍ରାବନ୍ଧିକ ଓଡ଼ିଆମାନଙ୍କୁ ସେମାନଙ୍କ ଅତୀତ ବୀରତ୍ୱ ସ୍ମରଣ କରାଇ କର୍ମମୁଖର ହେବା ସକାଶେ ତାଙ୍କ ପ୍ରବନ୍ଧମାନଙ୍କରେ ଦେଇଥିଲେ କାଳୋଚିତ ଆହ୍ୱାନ । ଏବେ ଏ ଆହ୍ୱାନର ବିଶେଷ ପ୍ରାସଙ୍ଗିକତା ନଥିଲେ ସୁଦ୍ଧା ଏହା ଯେ ତରୁଣମାନଙ୍କ ପ୍ରାଣରେ ଜାତୀୟ ଅନୁରାଗ ସଞ୍ଚାର କରିବାରେ ସହାୟକ ଏଥିରେ ସନ୍ଦେହ ନାହିଁ । ସେ ତରୁଣମାନଙ୍କୁ ସବୁବେଳେ ସ୍ୱଦେଶପ୍ରୀତି ମନ୍ତ୍ରରେ ଦୀକ୍ଷିତ ହେବା ପାଇଁ ଆହ୍ୱାନ ଦେଉଥିଲେ । ମହାପୁରୁଷମାନଙ୍କ ତ୍ୟାଗପୂତ ଜୀବନଚରିତ ଶୁଣାଇବା ସେତେବେଳର ଏକ ଆବଶ୍ୟକତା ଥିଲା । ସେ ମଧ୍ୟ 'ଭାରତର ମହାପୁରୁଷଗଣ' ପ୍ରବନ୍ଧ ଲେଖି ଆମ ତରୁଣମାନଙ୍କୁ ଯଥେଷ୍ଟ ଉଦ୍‌ବୋଧନ ଦେଇଥିଲେ । ମହାପୁରୁଷଙ୍କ ଜୀବନୀ ଅଧ୍ୟୟନର ଆବଶ୍ୟକତା

---

୧ । ଉତ୍କଳ ସାହିତ୍ୟ—୧୬ଶଭାଗ, ୧ମ ସଂଖ୍ୟା, ଦକ୍ଷିଣ ଭାରତର ସମରପ୍ରିୟ ଜାତିସକଳ ।

ସମ୍ପର୍କରେ ତାଙ୍କର ମନ୍ତବ୍ୟ ଥିଲା ଏହିପରି ; "ମହାପୁରୁଷଗଣଙ୍କ ଜୀବନଚରିତ ପାଠ କରିବା ପ୍ରତ୍ୟେକ ବ୍ୟକ୍ତିର ପ୍ରଧାନ ଧର୍ମ ; ସେମାନଙ୍କ ପଦାନୁସରଣ କରିବା ଶ୍ରେୟସ୍କର । ସେମାନଙ୍କ ନୀତି ବା ଉପଦେଶ କାର୍ଯ୍ୟରେ ପରିଣତ କରି ନ ପାରିଲେ ହେଁ, କେବଳ ଜୀବନଚରିତ ପାଠରେ କମ୍ ଉପକାର ହୁଏ ନାହିଁ । ମହାପୁରୁଷ ଚରିତାନୁଶୀଳନରେ ହୃଦୟରେ ପବିତ୍ରତା, ଉଦାରତା ଉଦିତ ହୁଏ । ମୂର୍ଖତା ଓ ସଙ୍କୀର୍ଣ୍ଣତା ନଷ୍ଟ ହୁଏ ଏବଂ ଶରୀର, ମନ ଓ ଆତ୍ମାର ଉନ୍ନତି ସାଧିତ ହୁଏ । ସ୍କୁଲ, କଲେଜରେ ମହାପୁରୁଷ ଚରିତ ଆଲୋଚିତ ହେବା ଉଚିତ । ଶ୍ରେଷ୍ଠ ସୁକୁମାରମତି ବାଳକବାଳିକାମାନଙ୍କୁ ମଧ୍ୟ ଏହା ସରଳ ଭାବରେ, ସହଜ ଉପାୟରେ ପଢ଼ାଇବା ବିଧେୟ ।" (୩) ତାଙ୍କର ଏହି ପ୍ରବନ୍ଧଟି ଉପରେ Thomas Carlyle ଙ୍କ Hero, Heroism and Hero worshipର ପ୍ରଭାବ ପରିଲକ୍ଷିତ । ଏହି ପ୍ରବନ୍ଧଟି ଭାରତୀୟ ମହାପୁରୁଷମାନଙ୍କ ପୃଷ୍ଠଭୂମି ଉପରେ ରଚିତ । ଭାରତର ପ୍ରାଚୀନ ବିଭବମାନଙ୍କୁ ନେଇ ସେ ଯେଉଁସବୁ ପ୍ରବନ୍ଧ ରଚନା କରିଛନ୍ତି, ସେଥିରେ ତାଙ୍କର ସ୍ୱଦେଶପ୍ରାଣତା ଓ ମମତାମୟୀ ଭାରତ ଜନନୀ ପ୍ରତି ଅନ୍ତରଙ୍ଗତା ପ୍ରକାଶିତ ।

ପ୍ରାବନ୍ଧିକ ଅତୀତ ଭାରତର ଗୌରବ ଗାନ ତାଙ୍କ ପ୍ରବନ୍ଧମାନଙ୍କରେ କରିଥିଲେ ସୁଦ୍ଧା ସେ କେବେହେଲେ ବର୍ତ୍ତମାନବିମୁଖ ନଥିଲେ । ଅତୀତର ସମୃଦ୍ଧିଗୁଡ଼ାକୁ ନେଇ ଆଳସ୍ୟ ଜୀବନ ଯାପନକୁ ସେ ଆଦୌ ପସନ୍ଦ କରୁ ନଥିଲେ । ଓଡ଼ିଆ ଜାତିର ଅତୀତକୁ ଯେଉଁମାନେ ପୁଞ୍ଜି କରି ଅଧୁନା ଏକାବେଳେକେ କର୍ମଶକ୍ତିରହିତ ହୋଇ ଗର୍ବ ଅନୁଭବ କରନ୍ତି, ସେମାନଙ୍କୁ ପ୍ରାବନ୍ଧିକ ବେଶ୍ କଠୋର ମନ୍ତବ୍ୟମାନ ଶୁଣାଉଥିଲେ । ତାଙ୍କର ଅତୀତପ୍ରିୟ ଓଡ଼ିଆମାନଙ୍କ ସମ୍ପର୍କରେ ବେଶ୍ ବିଦ୍ରୁପ ଥିଲା ? ତାହା ଏହିପରି, "ଅତ୍ୟନ୍ତ ଦୁଃଖର ବିଷୟ ଏହି ଯେ, ଆଜକାଲି ସେମାନଙ୍କ ଧମନୀରେ ବୀର୍ଯ୍ୟଦୃପ୍ତ ପ୍ରାଚୀନ ସୈନିକଗଣଙ୍କ ଶୋଣିତ ପ୍ରବାହିତ ହେଲେ ହେଁ ସେମାନଙ୍କର ଆଉ ସେ ସ୍ଫୂର୍ତ୍ତି ନାହିଁ, ତେଜ ନାହିଁ, ଉତ୍ସାହ ଓ ବଳ ନାହିଁ ଏବଂ ସାହସ ଓ ବୀରତ୍ୱ ନାହିଁ—ଅଛି କେବଳ ପୂର୍ବ ପ୍ରତିଷ୍ଠା ସ୍ମରଣରେ କ୍ଷୀଣ ଗୌରବାନୁଭୂତି ଓ ନିଷ୍ପ୍ରଭ ଗର୍ବବୋଧ । ସେମାନେ ବର୍ତ୍ତମାନ ଦୁଃସ୍ଥ, ଦୁର୍ବଳ ଓ ଦୁର୍ଭିକ୍ଷ ପୀଡ଼ିତ ; ସେମାନଙ୍କ ମଧ୍ୟରୁ ଅଧିକାଂଶ ଇନାମ, ଭୂମି,

---

୩ । ଉତ୍କଳ ସାହିତ୍ୟ—୩୯ଶ ଭାଗ/୯ମ ସଂଖ୍ୟା-ଭାରତର ମହାପୁରୁଷଗଣ ପୃ-୩୩-୩୪

ଅସ୍ତ୍ରଶସ୍ତ୍ର ନକଲ ବିକାଳିଙ୍କି ଖାଇ ସାରିଲେଣି ଏବଂ କେତେଜଣ ପୁରୁଷାନୁକ୍ରମିକ ଫମ୍ପା ଉପାଧିର ଆଡ଼ମ୍ବର ଦେଖାଇ ଉଦର ପୂରଣ କରିଓ ବର୍ତ୍ତମାନ ରାଜାମାନଙ୍କ ଦ୍ୱାରସ୍ଥ ହୁଅନ୍ତି।" (୪) ପ୍ରାଣପ୍ରାଚୁର୍ଯ୍ୟଭରା ଅତୀତକୁ କେବଳ ସ୍ମରଣ କରି, ସମ୍ପ୍ରତି ମଣିଷ ଏହାକୁ ସାମଗ୍ରୀ ରୂପେ ବ୍ୟବହାର କରି ବଞ୍ଚିବାକୁ ସେ ଘୃଣା କରୁଥିଲେ। କାରଣ ସେ ଭଲ ଭାବରେ ବୁଝିଥିଲେ, ଯେଉଁଠାରେ ମଣିଷ ତା'ର ଅତୀତର ସାଂସ୍କୃତିକ ସମ୍ପତ୍ତିଗୁଡ଼ିକୁ ଉପଭୋଗ କରି ଜୀବନ ଯାପନ କରେ, ସେଠାରେ ସଂସ୍କୃତି ଜୀବନ୍ତ ନ ହୋଇ ହୁଏ ଜୀବନ୍ମୃତ। କୌଣସି ଜାତିର ଅତୀତ ଗୌରବକୁ ଯେଉଁ ମଣିଷମାନେ ବିକି ଖାଇ ଚଳନ୍ତି, ସେମାନଙ୍କ ପାଇଁ ଖ୍ରୀଷ୍ଟଧର୍ମଗ୍ରନ୍ଥ ବାଇବେଲ୍‌ର 'Philistine' ବା 'ସଂସ୍କୃତି ଦ୍ୱେଷୀ' ଶବ୍ଦ ବ୍ୟବହାର କରି ଶ୍ରୀ ଅରବିନ୍ଦ ସମାଲୋଚନା କରିଛନ୍ତି।

ପ୍ରାଚୀନ ଭାରତର ଇତିହାସ ଓ ସଂସ୍କୃତି ଉପରେ ଆଧାରିତ ପ୍ରବନ୍ଧଗୁଡ଼ିକରେ ତାଙ୍କର ଉଚ୍ଚକୋଟୀର ଗବେଷଣା, ଜାତୀୟ ଭାବନା ଓ ପାଣ୍ଡିତ୍ୟର ସମନ୍ୱୟ ହୋଇଛି। ସେ ଏହି ପ୍ରବନ୍ଧଗୁଡ଼ିକ ରଚନା କରିବାପାଇଁ ବେଦ, ଉପନିଷଦ, ପୁରାଣ, ସ୍ମୃତିଶାସ୍ତ୍ର, କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର, ଶୁକ୍ରନୀତି ପ୍ରଭୃତି ପ୍ରାଚୀନ ଭାରତୀୟ ଗ୍ରନ୍ଥମାନ ଭଲ ଭାବରେ ଅଧ୍ୟୟନ କରିଥିଲେ। ଏତଦ୍ ଭିନ୍ନ ସେ Cunningham's Geography of Ancient India, C. V. Vaidyଙ୍କ 'Epic India', Rhys Devisଙ୍କ 'Budhist India', V. A. Smithଙ୍କ 'Early History of India', A. weberଙ୍କ 'History of Indian Literature', Bealଙ୍କ 'Life of Hiuen Tsang', ରାଜେନ୍ଦ୍ର ଲାଲ ମିତ୍ରଙ୍କ 'Antiquities of Orissa', ରମେଶ ଚନ୍ଦ୍ର ଦତ୍ତଙ୍କ 'Civilization in Ancient India', ପ୍ରଭୃତି ପ୍ରସିଦ୍ଧ ଗ୍ରନ୍ଥମାନ ଗଭୀର ଭାବେ ଅନୁଶୀଳନ କରିଥିବେ। ପ୍ରାଚୀନ ଭାରତ ସମ୍ପର୍କରେ ରହିଥିବା ପ୍ରାଚ୍ୟ ଓ ପାଶ୍ଚାତ୍ୟ ଉଭୟ ମତର ସମୀକରଣରେ ତାଙ୍କର ପ୍ରବନ୍ଧଗୁଡ଼ିକ ରଚିତ।

### (ଖ) ଧର୍ମ-ଦର୍ଶନକୁ ନେଇ ରଚିତ ପ୍ରବନ୍ଧ :

ରାମଚନ୍ଦ୍ର ଆଚାର୍ଯ୍ୟଙ୍କର ଭାରତର ଧର୍ମ ଓ ଦର୍ଶନ ସମ୍ପର୍କରେ ପାଣ୍ଡିତ୍ୟ ସୁବିଦିତ। ଭାରତୀୟ ଦର୍ଶନ ସମ୍ପର୍କରେ ତାଙ୍କର ଗଭୀର ବ୍ୟୁତ୍ପତ୍ତି ଥିଲା। ସେ ସାଂଖ୍ୟ,

---

୪। ଉତ୍କଳ ସାହିତ୍ୟ—୨୦ଶଭାଗ/୨ୟ ସଂଖ୍ୟା-ଦକ୍ଷିଣଭାରତର ସମରପ୍ରିୟ ଜାତିସକଳ। ପୃ-୫୩

ଯୋଗ, ନ୍ୟାୟ, ବୈଶେଷିକ, ମୀମାଂସା, ବେଦାନ୍ତ—ଏହି ଷଟ୍ ଦର୍ଶନ ସମ୍ବନ୍ଧରେ ଅନେକ ତାଙ୍କ ପ୍ରବନ୍ଧମାନଙ୍କରେ ଉଲ୍ଲେଖ କରିଛନ୍ତି । ଏହି ପର୍ଯ୍ୟାୟର ପ୍ରବନ୍ଧମାନଙ୍କ ମଧ୍ୟରେ 'ତ୍ରିମୂର୍ତ୍ତି', 'ଗୀତାସାର', 'ମୁକ୍ତ ମନ୍ଦିର', 'ଭାରତର ପବିତ୍ର ହ୍ରଦ' ପ୍ରଧାନ । ସେ ଜିଜ୍ଞାସୁ ମନ ନେଇ ଭାରତର ଧର୍ମ ରହସ୍ୟ ଭେଦ କରିବାକୁ ଚେଷ୍ଟା କରୁଥିଲେ । ଧର୍ମକୁ ନେଇ ସମ୍ପ୍ରଦାୟ ସମ୍ପ୍ରଦାୟ ଭିତରେ ରହିଥିବା ଭେଦଭାବକୁ ସେ ଆଦୌ ପସନ୍ଦ କରୁନଥିଲେ । ସେ ଏହାକୁ ବିଶ୍ୱାସର ଏକ ଯୋଗସୂତ୍ର ଭାବେ ଗ୍ରହଣ କରିଥିଲେ । ଏ ସମ୍ପର୍କରେ ତାଙ୍କର 'ତ୍ରିମୂର୍ତ୍ତି' ପ୍ରବନ୍ଧଟି ବିଶେଷ ଗୁରୁତ୍ୱପୂର୍ଣ୍ଣ । ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କ ଭିତରେ ସେ କୌଣସି ଅନ୍ତର୍ଦ୍ୱନ୍ଦ୍ୱକୁ ସ୍ୱୀକାର କରିବାକୁ ଚାହିଁ ନାହାନ୍ତି । ସେ ବିଷ୍ଣୁଙ୍କୁ ସତ୍ତ୍ୱ, ବ୍ରହ୍ମାଙ୍କୁ ରଜ ଓ ଶିବଙ୍କୁ ତମ ଗୁଣର ପ୍ରତୀକ ଭାବେ ନେଇଛନ୍ତି । ଏହି ତିନିଗୁଣ ପ୍ରକୃତିରୁ ଉତ୍ପନ୍ନ । ତ୍ରିଗୁଣ ଓ ତ୍ରିମୂର୍ତ୍ତି ମଧ୍ୟରେ ସମ୍ପର୍କ ହେଉଛି ଅବିଚ୍ଛେଦ୍ୟ । ତାଙ୍କ ମତରେ, "ତ୍ରିଗୁଣର ପ୍ରକୃତ ଧର୍ମ ସୁସ୍ପଷ୍ଟ ରୂପେ ବୁଝି ନ ପାରିବାରୁ ହିଁ ଭାରତରେ ତ୍ରିମୂର୍ତ୍ତିର ଭକ୍ତ ଓ ସେବକମାନଙ୍କ ମଧ୍ୟରେ ନାନା ପ୍ରକାର ଅଶାନ୍ତି, ଗୋଳମାଳ, ବିଦ୍ୱେଷ ଓ ବାକ୍‌ଯୁଦ୍ଧର ଭୀଷଣ ସୃଷ୍ଟି, ପ୍ରଳୟ ତାଣ୍ଡବ !" (୫) ସେ ଧର୍ମକୁ ଏକ ଉଦାର ସମନ୍ୱୟବାଦୀ ମନୋଭାବ ନେଇ ବିଚାର କରୁଥିଲେ । ତାଙ୍କର 'ଗୀତାସାର' ପ୍ରବନ୍ଧରେ ଗୀତାର ଦାର୍ଶନିକ ତର୍ଜମା ସେ କରିଥିଲେ । ସେ ଧର୍ମକୁ ମାନବ ସହିତ ମାନବର ମୈତ୍ରୀବନ୍ଧନର ସୂତ୍ର ରୂପେ ଓ ଦର୍ଶନକୁ ବୃହତ୍ତର ଜୀବନ ଦୃଷ୍ଟି ରୂପେ ଦେଖୁଥିଲେ ।

ସେ ଧର୍ମଦର୍ଶନ ମୂଳକ ପ୍ରବନ୍ଧମାନଙ୍କରେ କେତେକ ସ୍ଥଳରେ ତାଙ୍କର ଗଭୀର ଆଧ୍ୟାତ୍ମ ଅନୁଭୂତି ସହିତ ସୂକ୍ଷ୍ମ ସୌନ୍ଦର୍ଯ୍ୟଚେତନା ପ୍ରକାଶ କରିଛନ୍ତି । ଏ ପ୍ରସଙ୍ଗରେ 'ଭାରତର ପବିତ୍ର ହ୍ରଦ' ପ୍ରବନ୍ଧର କିୟଦଂଶ ଉଲ୍ଲେଖ କରାଯାଇପାରେ । "ପୁଷ୍କର ହ୍ରଦ କୂଳରେ ଶ୍ରୀକୃଷ୍ଣଙ୍କ ଉଦ୍ଦେଶ୍ୟରେ ଅନେକଗୁଡ଼ିଏ ଦେବାଳୟ ନିର୍ମିତ ହୋଇଅଛି । କେବେ କେବେ ଏହି ସମସ୍ତ ଦେବମନ୍ଦିର ଆଗରେ ହ୍ରଦ ଜଳରେ ଯୁବତୀ ଦଳ ଅତି ସୂକ୍ଷ୍ମ ବସ୍ତ୍ରରେ ମାତ୍ର ଅବଗୁଣ୍ଠିତ ହୋଇ ନାନା କ୍ରୀଡ଼ା କୌତୁକ, ଆମୋଦ ପ୍ରମୋଦରେ ମାତି ରହନ୍ତି । ସେମାନଙ୍କ ପ୍ରାଣ ବିନୋଦନ ସୁମଧୁର ବ୍ରୀଡ଼ାମିଶ୍ରିତ ହାସ୍ୟଧ୍ୱନିରେ ହ୍ରଦତୀର ମୁଖରିତ ହୋଇଉଠେ । ସେତେବେଳେ ଦର୍ଶକର ମନେହୁଏ ଯେପରି ପ୍ରେମାଧାର ରସିକଶେଖର ଶ୍ରୀକୃଷ୍ଣଙ୍କ ସମକ୍ଷରେ କୃଷ୍ଣଗତପ୍ରାଣା ସାତ୍ତ୍ୱିକ ଭାବବିହ୍ୱଳା ଗୋପାଙ୍ଗନାଗଣ କୃଷ୍ଣପ୍ରେମରେ

---

୫ । ଉତ୍କଳ ସାହିତ୍ୟ—୩୨ଶଭାଗ/୨ୟ ସଂଖ୍ୟା-ତ୍ରିମୂର୍ତ୍ତି—ପୃ-୭୮

ତନ୍ମୟ ହୋଇ ନୃତ୍ୟଗୀତାଦି କରୁଅଛନ୍ତି । ଯୁବତୀ ଦଳ ଥରକୁ ଥର ଯେତେ-ବେଳେ ଜଳକ୍ରୀଡ଼ାରୁ ନିବୃତ୍ତ ହୋଇ ମୁକ୍ତ କୁନ୍ତଳାବୃତ୍ତ ନଗ୍ନ ସ୍କନ୍ଧରେ କ୍ରୀଡ଼ାପର ଚଳନଶୀଳ ଲହରୀମାଳା ଉପରକୁ ଉଠନ୍ତି, ସେତେବେଳେ ସେମାନଙ୍କୁ ଦେଖି ଦର୍ଶକ ମନରେ କି ସ୍ପୃହା ପଡ଼େ, କେଉଁ ସ୍ମୃତିର ଉଦୟ ହୁଏ ? ଅବଶ୍ୟ ଅପ୍ସରା-ମାନଙ୍କ ସ୍ମୃତି—ବ୍ରହ୍ମାହ୍ରଦସ୍ଥ ବାରୁଣୀ ଅପୂର୍ବ ରୂପବତୀ ଅପ୍ସରାଗଣଙ୍କ ମଧୁର ସ୍ମୃତି ।” (୬) ସେ ଧର୍ମ ଦର୍ଶନର ତତ୍ତ୍ୱମାନଙ୍କୁ ସରଳ, ସହଜ ଓ ସୁଖବୋଧ ଭାବରେ ପାଠକ ନିକଟରେ ଉପସ୍ଥାପିତ କରିବାରେ ଥିଲେ ଧୁରୀଣ । ଧର୍ମର ନିଗୂଢ଼ ତତ୍ତ୍ୱକୁ ଗୁହାରୁ ମୁକ୍ତକରି ସେ ସାଧାରଣ ଜନତା ଆଡ଼କୁ କରିଥିଲେ ପ୍ରସାରିତ ।

## ( ଗ ) ଜୀବନ ଚରିତ ମୂଳକ ପ୍ରବନ୍ଧ :

ଯେଉଁମାନେ ଜୀବନକୁ ଜଗତର ବୃହତ୍ତର କଲ୍ୟାଣ ସକାଶେ ନିୟୋଜିତ କରିଥିଲେ, ସେମାନଙ୍କ ଜୀବନୀକୁ ନେଇ ପ୍ରବନ୍ଧ ରଚନାରେ ରାମଚନ୍ଦ୍ର ଆଚାର୍ଯ୍ୟ କେବେହେଲେ ବିମୁଖ ନଥିଲେ । ସେମାନଙ୍କ ତ୍ୟାଗ, ଆଦର୍ଶ ଓ ମହାନୁଭବତା ସମ୍ପର୍କରେ ପ୍ରାବନ୍ଧିକ କେତେକ ଉଚ୍ଚକୋଟୀର ପ୍ରବନ୍ଧ ଲେଖିଥିଲେ । ତାଙ୍କର ଜୀବନଚରିତମୂଳକ ପ୍ରବନ୍ଧମାନଙ୍କ ମଧ୍ୟରେ ‘ରାମଭକ୍ତ ତୁଳସୀ ଦାସ’, ‘ସ୍ୱର୍ଗତ ପଣ୍ଡିତ ସଦାଶିବ ବିଦ୍ୟାଭୂଷଣ’, ‘ସ୍ୱର୍ଗତ ପଣ୍ଡିତ ଗୋପବନ୍ଧୁ’, ପ୍ରଧାନ । ସେ ରାମଭକ୍ତ ତୁଳସୀ ଦାସଙ୍କୁ ଜଣେ ମହାନ୍ ସନ୍ଥକବି ରୂପେ, ସ୍ୱର୍ଗତ ପଣ୍ଡିତ ସଦାଶିବ ବିଦ୍ୟାଭୂଷଣଙ୍କୁ ଜଣେ କୃତବିଦ୍ୟ ପଣ୍ଡିତ ରୂପେ ଓ ସ୍ୱର୍ଗତ ପଣ୍ଡିତ ଗୋପବନ୍ଧୁଙ୍କୁ ଜଣେ ଉତ୍କଳ ହିତୈଷୀ ରୂପେ ଚିତ୍ରଣ କରିଛନ୍ତି । ‘ରାମଭକ୍ତ ତୁଳସୀ ଦାସ’ ପ୍ରବନ୍ଧଟିରେ ସନ୍ଥକବିଙ୍କ ପ୍ରତି ପ୍ରାବନ୍ଧିକଙ୍କର ଭକ୍ତିପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଅର୍ପିତ ହୋଇଥିବା ବେଳେ, ଅନ୍ୟ ପ୍ରବନ୍ଧ ଦୁଇଟି ପରଲୋକଗତ ଆତ୍ମା ଉଦ୍ଦେଶ୍ୟରେ ସ୍ମୃତିତର୍ପଣ ସକାଶେ ରଚିତ । ସ୍ୱର୍ଗତ ପଣ୍ଡିତ ସଦାଶିବ ବିଦ୍ୟାଭୂଷଣଙ୍କ ମନସ୍ୱିତା, ଐତିହ୍ୟ ସଚେତନତା ଓ ସ୍ୱଦେଶପ୍ରାଣତାକୁ ପ୍ରାବନ୍ଧିକ ଏଥିରେ ଆଲୋଚନା କରିଥିଲେ । ଏହି ଜୀବନଚରିତମୂଳକ ପ୍ରବନ୍ଧଟିରେ ତାଙ୍କର ଆବେଗମୟ ଭାବମୁଗ୍ଧତା ବାସ୍ତବରେ ହୃଦ୍ୟ । ଜଣେ ପଣ୍ଡିତଙ୍କ ସମ୍ପର୍କରେ ଏଭଳି ଅନ୍ତରଙ୍ଗ ଭାଷାରେ ଲିଖିତ ଜୀବନୀ ଓଡ଼ିଆ ସାହିତ୍ୟରେ ଦୁର୍ଲ୍ଲଭ । ‘ସ୍ୱର୍ଗତ ପଣ୍ଡିତ ଗୋପବନ୍ଧୁ’ ପ୍ରବନ୍ଧଟିରେ ସେ ଗୋପବନ୍ଧୁଙ୍କ ତ୍ୟାଗ, ଆଦର୍ଶ ଓ ମହାନୁଭବତାର ସ୍ମୃତିଚାରଣ କରିଛନ୍ତି । ତାଙ୍କର ଅକାଳ ବିୟୋଗରେ ଅଭିଭୂତ

---

୬। ଉତ୍କଳ ସାହିତ୍ୟ-୩୦ ଶତକ/୯ମ ସଂଖ୍ୟା-ଭାରତର ପଦ୍ମବନ ହ୍ରଦ । ପୃ-୪୫୫-୪୫୬

ହୋଇ ପ୍ରାବନ୍ଧିକ ଏହି ପ୍ରବନ୍ଧଟିରେ ପରଲୋକଗତ ଅମର ଆତ୍ମା ପ୍ରତି ଶୋକୋଚ୍ଛ୍ୱାସ ବ୍ୟକ୍ତ କରିଛନ୍ତି । ଏହି ପ୍ରବନ୍ଧଟିର ଆବେଗ, ଉଚ୍ଛ୍ୱାସ ଓ ଭାବଧର୍ମ, ଯେକୌଣସି ଶୋକଗୀତିକା (Elegy) ସହିତ ସମାନ ।

ପ୍ରାବନ୍ଧିକ ଜୀବନୀ ପାଠର ଉପାଦେୟତା ଭଲଭାବରେ ବୁଝିଥିଲେ । ସେ ଶ୍ରଦ୍ଧାର ସହିତ କବି, ମହାପୁରୁଷ, ସାଧୁ, ସମାଜସେବୀ, ବୈଜ୍ଞାନିକ ପ୍ରମୁଖଙ୍କ ଜୀବନୀ ଶିଶୁ ଓ କିଶୋରମାନଙ୍କ ସକାଶେ ମଧ୍ୟ ଲେଖିଥିଲେ । ସେ ପୁରାଣର ବିଭିନ୍ନ ଚରିତ୍ରମାନଙ୍କ ଜୀବନୀ ତାଙ୍କ ପାଠ୍ୟପୁସ୍ତକଗୁଡ଼ିକରେ ଲେଖି ଯାଇଛନ୍ତି । 'ଲବକୁଶ', 'ମାର୍କଣ୍ଡେୟ', 'ଅନସୂୟା' ପ୍ରଭୃତି ପୌରାଣିକ ଚରିତ୍ର ସମ୍ପର୍କରେ ତାଙ୍କର ଛୋଟ ଛୋଟ ପୁସ୍ତକମାନ ରହିଛି ।

ତାଙ୍କର ଜୀବନଚରିତମୂଳକ ପ୍ରବନ୍ଧଗୁଡ଼ିକରେ ତଥ୍ୟ ଅପେକ୍ଷା ଲେଖକଙ୍କ ଶ୍ରଦ୍ଧା ଅଧିକ ପ୍ରକଟିତ । ବ୍ୟକ୍ତିବିଶେଷଙ୍କ ଜୀବନୀ ରଚନା ପାଇଁ ପ୍ରଥମେ ସେ ଅନ୍ତରରେ ସେହି ବ୍ୟକ୍ତିଙ୍କ ପ୍ରତି ଗଭୀର ଶ୍ରଦ୍ଧା ପୋଷଣ କରିବାକୁ ହେବ, ଏ କଥାଟି ପ୍ରାବନ୍ଧିକ ଆଚାର୍ଯ୍ୟ ଆମକୁ କହିଛନ୍ତି । କେବଳ ଶ୍ରଦ୍ଧାଦ୍ୱାରା ହିଁ ଉଚ୍ଚକୋଟୀର ଜୀବନଚରିତ ସେ ସମକାଳୀନ ପଣ୍ଡିତ ଓ ସମାଜସେବକଙ୍କ ସମ୍ପର୍କରେ ଲେଖିଯାଇଛନ୍ତି । ଏଗୁଡ଼ିକ ପାଠକଲେ ପ୍ରାଣ ପୁଲକିତ ହୁଏ ।

ରାମଚନ୍ଦ୍ର ଆଚାର୍ଯ୍ୟଙ୍କ ପ୍ରବନ୍ଧର ଗୁରୁତ୍ୱ ଉପଲବ୍ଧି କରିବାକୁ ହେଲେ, ଏହାର ଶିଳ୍ପ ପ୍ରକରଣକୁ ବୁଝିବା ଆବଶ୍ୟକ । କେବଳ ତଥ୍ୟ ପ୍ରମାଣକୁ ଯୁକ୍ତି-ଯୁକ୍ତ ଭାବରେ ଉପସ୍ଥାପିତ କରିବା ତାଙ୍କ ପ୍ରବନ୍ଧର ଲକ୍ଷ୍ୟ ନଥିଲା । ସେ ତାଙ୍କ ପ୍ରବନ୍ଧଗୁଡ଼ିକୁ ପାଠକ ନିକଟରେ ସାହିତ୍ୟସାମଗ୍ରୀ ରୂପେ ପ୍ରକାଶ କରିଥିଲେ । ବୋଧହୁଏ ସେଥିପାଇଁ ପୁରୁଣା ଉପାଦାନ ଭିତ୍ତିରେ ରଚିତ ତାଙ୍କର ପ୍ରବନ୍ଧଗୁଡ଼ିକୁ ଏବେବି ପଢ଼ିବା ସକାଶେ ପାଠକ ଆଗ୍ରହ ପୋଷଣ କରେ । ସେ ପ୍ରାଚୀନ ଭାରତର ଶାସ୍ତ୍ରମାନଙ୍କରୁ ଉପାଦାନ ସଂଗ୍ରହ କରି ନିଜସ୍ୱ ଭାବନା ଓ ଯୁକ୍ତିରେ ପରିଷ୍କାରିତ କରିବାରେ ଥିଲେ ସିଦ୍ଧହସ୍ତ । ସେ ସଂସ୍କୃତ ଓ ଇଂରାଜୀରୁ ବହୁ ଦୃଷ୍ଟାନ୍ତ ତାଙ୍କ ପ୍ରବନ୍ଧମାନଙ୍କରେ ଉଦ୍ଧାର କରିଛନ୍ତି । ଏ ସତ୍ତ୍ୱେ ସେ ତାଙ୍କ ପ୍ରବନ୍ଧମାନଙ୍କରେ ନିଜର କିଛିନା କିଛି ବକ୍ତବ୍ୟ ରଖିଥିଲେ । ଅନେକନ୍ତ ସେ ଉଦ୍‌ବୋଧନ ଦେବା ଢଙ୍ଗରେ ମଧ୍ୟ ଏ ଜାତିର ଅତୀତ ବିଭବ ସମ୍ପର୍କରେ ନାନା ବିଶେଷଣ ପ୍ରୟୋଗ କରି ତାଙ୍କର ବକ୍ତବ୍ୟ କାଢ଼ିଛନ୍ତି । ତାଙ୍କର ଏ ଧରଣର ଉଦ୍‌ବୋଧନଧର୍ମୀ ଗଦ୍ୟ ଦେଖନ୍ତୁ, 'କିନ୍ତୁ ଏହି ପ୍ରାଚୀନ-ଗୌରବ-ବିଭବ-ଶାଳିନୀ, ଯଶଃ କୀର୍ତ୍ତି ମାଳିନୀ, ପୁଣ୍ୟ ବିଧାୟିନୀ, ଶୁଭ ପ୍ରଦାୟିନୀ ଏବଂ କୋଟି କବିବର ଶିଳ୍ପୀ ଜନନୀ

ଭାରତ ଭୂମିର ସୁଦୂର୍ଘ, ଚନ୍ଦ୍ର, ବିଚିତ୍ର ଓ ବିଭିନ୍ନ ରଙ୍ଗରଂଜିତ ଇତିହାସର ଯେଉଁ ସକଳ ସ୍ଥାନରେ ସତ୍ରାନ୍ତ୍ର ଆଲୋକ ନିକ୍ଷିପ୍ତ ହୋଇଅଛି, ସେହି ସ୍ଥାନରେ ଭାରତର ଶିକ୍ଷା, ଅଧ୍ୟୟନ ଓ ଧର୍ମ ପ୍ରତି ଆଗ୍ରହ ଓ ଆଶକ୍ତିର ପ୍ରତ୍ୟକ୍ଷ ପ୍ରମାଣ ପ୍ରାପ୍ତ ହେଉଁ ।" (୭)

ପ୍ରାବନ୍ଧିକ ଆଗ୍ରୁଙ୍ଗ ଅନେକ ସ୍ଥାନରେ ତାଙ୍କ ପ୍ରବନ୍ଧ ମାନଙ୍କରେ ଆବେଗ-ପୂର୍ଣ୍ଣ ଭାଷା ବ୍ୟବହାର କରିବାକୁ କୁଣ୍ଠାବୋଧ କରିନାହାନ୍ତି । ଶ୍ରେଷ୍ଠ ଶ୍ରେଷ୍ଠ ବାକ୍ୟରେ ନାଟକର ସଂଳାପ ପରି ଏଟୁଛିକ ଆତ୍ମପ୍ରକାଶ କରିଛି । ତାଙ୍କର ନାଟକର ସଂଳାପସୁଲଭ ଭାଷାବିନ୍ୟାସ ବିଷୟର କେତେକ ଉଦାହରଣ ଶୁଣନ୍ତୁ, "ଭାରତ-ବର୍ଷର ଅତୀତ ମିଥ୍ୟା ନୁହେଁ, କଳ୍ପନା ନୁହେଁ । ହିନ୍ଦୁ ଜାତିର ପୂର୍ବ କର୍ମ-କଳାପ କବିକଳ୍ପନାର ସାମଗ୍ରୀ ନୁହେଁ । କେବଳ ଧ୍ୟାନ ଧାରଣାର ବିଷୟୀଭୂତ ନୁହେଁ । ଜଗତରେ ତାହାର ଗୁରୁଗିରି ଐତିହାସିକ ସତ୍ୟ ।"(୮) ଏହା କୌଣସି ନାଟକର ଚରିତ୍ର ମୁଖର ସଂଳାପ ପରି ମନେହୁଏ ।

ପ୍ରାବନ୍ଧିକ ଆଗ୍ରୁୟ୍ୟ ତାଙ୍କ ପ୍ରବନ୍ଧମାନଙ୍କରେ କେବେ କେମିତି କବି ସୁଲଭ ବର୍ଣ୍ଣନା କରିବାକୁ ମଧ୍ୟ ଭୁଲିନାହାନ୍ତି । ସେ ସଂସ୍କୃତ ଶାସ୍ତ୍ରମାନଙ୍କର ଉପାଦାନକୁ କବିତ୍ୱପୂର୍ଣ୍ଣ ଗଦ୍ୟରେ ତାଙ୍କ ପ୍ରବନ୍ଧରେ ପ୍ରକାଶ କରିଛନ୍ତି । ତାଙ୍କର କବିତ୍ୱପୂର୍ଣ୍ଣ ଗଦ୍ୟର ସ୍ୱରୂପ ଏହିପରି, "ମହୁମାଛି ଫୁଲରୁ ଯେପରି ଧୀରେ ଧୀରେ ରସ ଟାଣିନିଏ, ଜୋକ ଯେପରି ଧୀରେ ଧୀରେ ମନୁଷ୍ୟ ଦେହରୁ ରକ୍ତ ଶୋଷିନିଏ, ବାଛୁରିକୁ ଭୋକରେ ନ ରଖି ଏବଂ ଗାଈର ପହ୍ନାକୁ କଷ୍ଟ ବାଧା ନଦେଇ ଲୋକେ ଯେପରି ଦୁଧ ଦୁହିଁଥାନ୍ତି, ବ୍ୟାଘ୍ରୀ ଯେପରି କଷ୍ଟ ବାଧା ନଦେଇ ନିଜ ଛୁଆକୁ ଦାନ୍ତରେ ଧରି ବୁଲାବୁଲି କରେ ଏବଂ ମୂଷା ଯେପରି ତା'ର ତୀକ୍ଷ୍ଣ ଦାନ୍ତରେ ମନୁଷ୍ୟର ପାଦତଳ ଗ୍ରେବାଇ ଦେଲେ କଷ୍ଟ ଆଘାତ ଲାଗେ ନାହିଁ, ରାଜାକୁ ମଧ୍ୟ ସେହିପରି ପ୍ରଜାମାନଙ୍କୁ କୌଣସି ଅସୁବିଧା ଓ କଷ୍ଟରେ ନପକାଇ ସେମାନଙ୍କ ଠାରୁ କର ଆଦାୟ କରିବାକୁ ହେବ ।" (୯)

ପ୍ରାବନ୍ଧିକ କେତେକ ସ୍ଥଳରେ ତାଙ୍କର ପୂର୍ବଜ ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମାଙ୍କ ପରି ତତ୍ସମ ଶବ୍ଦ ବହୁଳ ଗଦ୍ୟ ରଚନାରେ କୃତିତ୍ୱ ଦେଖାଇଛନ୍ତି ।

---

୭ । ଉତ୍କଳ ସାହିତ୍ୟ—୨୩ଶ ଭାଗ/୨ୟ ସଂଖ୍ୟା—ପ୍ରାଚୀନ ଓ ମଧ୍ୟଯୁଗର ଭାରତରେ ଲୋକଶିକ୍ଷା—ପୃ-୮୩

୮ । ଉତ୍କଳ ସାହିତ୍ୟ—୨୭ଶ ଭାଗ/୫ମ ସଂଖ୍ୟା—ପ୍ରାଚୀନ ଭାରତର ପ୍ରଜାତନ୍ତ୍ର ଶାସନ—ପୃ-୧୮୫

୯ । ଉତ୍କଳ ସାହିତ୍ୟ—୨୨ଶ ଭାଗ/୧୦ମ ସଂଖ୍ୟା—ପ୍ରାଚୀନ ଭାରତର ପ୍ରଜାତନ୍ତ୍ର ଶାସନ—ପୃ-୩୮୫

ଦକ୍ଷିଣ ଓଡ଼ିଶାରେ ସେତେବେଳେ ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା ଓ ଶ୍ରୀ ଶ୍ୟାମ ସୁନ୍ଦର ରାଜଗୁରୁ ସୁଧୀ ପ୍ରାବନ୍ଧିକ ଭାବରେ ବିଶେଷ ପ୍ରତିଷ୍ଠା ଅର୍ଜ୍ଜନ କରିଥିଲେ । ସୁତରାଂ, ତରୁଣ ଲେଖକ ରାମଚନ୍ଦ୍ର ଆଚାର୍ଯ୍ୟ ସେ ସମୟରେ ଗୋପୀନାଥ ନନ୍ଦ ଶର୍ମାଙ୍କ ଗଦ୍ୟରୀତି ଦ୍ୱାରା ପ୍ରଭାବିତ ହୋଇ ସଂସ୍କୃତ ଶବ୍ଦ ବହୁଳ ରବାଡ଼ମ୍ବର ପୂର୍ଣ୍ଣ ଗଦ୍ୟ ଲେଖିବାରେ କିଛି ଅସ୍ୱାଭାବିକତା ନଥାଇ ପାରେ । ଏ ଧରଣର ଗଦ୍ୟ ଯେ ତାଙ୍କର ସଂସ୍କୃତ ସାହିତ୍ୟ ଜ୍ଞାନର ସାକ୍ଷ୍ୟ ପ୍ରଦାନ କରେ, ଏଥିରେ ସାମାନ୍ୟତମ ସନ୍ଦେହ ନାହିଁ । ଏଠାରେ ପ୍ରାବନ୍ଧିକଙ୍କର ଏହି ଗଦ୍ୟର ଏକ ନମୁନା ଦେଖନ୍ତୁ —"ଭାରତବର୍ଷ ଯେ ବହୁ ବିଷୟରେ ମାନବ ସମାଜର ଜ୍ଞାନ-ଦାତା, ଗୁରୁ ସ୍ଥାନୀୟ, ଏହା ଅତ୍ୟୁକ୍ତିର ଆଶଙ୍କା ନଥାଇ କୁହାଯାଇପାରେ । ଆଧୁନିକ ଜଗତର ଚିନ୍ତାଶୀଳ ବ୍ୟକ୍ତିମାନେ ମୁକ୍ତ କଣ୍ଠରେ ସ୍ୱୀକାର କରିବେ ଯେ ଭାରତ ପ୍ରାଚୀନ ଯୁଗରେ ସ୍ୱାଧୀନତା ମାର୍ତ୍ତଣ୍ଡର ସହସ୍ର କିରଣରେ ଉଦ୍ଭାସିତ ହୋଇ ଜଗତ ସମ୍ମୁଖରେ ଗୌରବ—ନିଶାଣ ଉଡ଼୍ଡୀନ କରିଥିଲା ।" (୧୦)

ପ୍ରାବନ୍ଧିକ ରାମଚନ୍ଦ୍ର ଆଚାର୍ଯ୍ୟ ଥିଲେ ଅତିମାତ୍ରାରେ ପାଠକ ସଚେତନ । ତାଙ୍କ ପ୍ରବନ୍ଧରେ ସେ ପାଠକମାନଙ୍କୁ ବହୁବାର ସମ୍ବୋଧନ କରିବାକୁ ଭୁଲି ନାହାନ୍ତି । ତାଙ୍କ ପୂର୍ବରୁ ଫକୀରମୋହନଙ୍କ ଉପନ୍ୟାସ ମାନଙ୍କରେ ଏଭଳି ପାଠକମାନଙ୍କୁ ସମ୍ବୋଧନ କରିବାର ଦୃଷ୍ଟାନ୍ତ ଦେଖିବାକୁ ମିଳେ । ସେ ପାଠକଙ୍କୁ ତାଙ୍କ ଲେଖା ସହିତ ଆତ୍ମୀୟତା ବନ୍ଧନରେ ବାନ୍ଧି ରଖିବା ସକାଶେ ଏପରି କରିଥିବା ଅସମ୍ଭବ ନୁହେଁ । ଏଠାରେ ପ୍ରାବନ୍ଧିକଙ୍କ ପାଠକ ସଚେତନତାର ଦୁଇଟି ଦୃଷ୍ଟାନ୍ତ ଦିଆଯାଉଛି । ତାହା ଏହିପରି, "ଭାରତରେ ମୁସଲମାନ ଗଣଙ୍କ ରାଜତ୍ୱ କାଳରେ ଯେଉଁ ସମସ୍ତ ଅଲିଖିତ ବିଧି ଓ ନୀତିରେ ବଶବର୍ତ୍ତୀ ହୋଇ ମୁସଲମାନ ଶାସକମାନେ ପରସ୍ପର ସହିତ ଏବଂ ସେମାନଙ୍କ ବିଧର୍ମୀ ପଡ଼ୋଶୀ ରାଜାମାନଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ହେଉଥିଲେ, ସେହି ସକଳ ନିୟମ ଓ ନୀତି ପାଠକ ପାଠିକା ମାନଙ୍କ ଆଗରେ ଉପସ୍ଥାପିତ କରିବା ଉଦ୍ଦେଶ୍ୟରେ ଏହି ପ୍ରବନ୍ଧର ଅବତାରଣା ।" (୧୧)

"ଭୂମିକା ଦୀର୍ଘ କରି ପାଠକ ପାଠିକା ମାନଙ୍କ ସମୟ ନଷ୍ଟ କରିବା ମୋର ଅଭିପ୍ରେତ ନୁହେଁ । ଭାରତ ସମ୍ବନ୍ଧରେ କିଛି ଲେଖିବାକୁ ଗିବା ସମୟରେ

---

୧୦ । ଉତ୍କଳ ସାହିତ୍ୟ—୨୭ଶ ଭାଗ/୫ମ ସଂଖ୍ୟା—ପ୍ରାଚୀନ ଭାରତର ପ୍ରଜାତନ୍ତ୍ର ଶାସନ—ପୃ-୧୮୫

୧୧ । ଉତ୍କଳ ସାହିତ୍ୟ—୨୭ଶ ଭାଗ/୧୧ଶ ସଂଖ୍ୟା—ମୁସଲମାନ ଭାରତର ସମର ନୀତି—ପୃ-୪୨୯

ଭାରତରେ ପ୍ରାଚୀନ ଗୌରବ ଅନୁଧାନ କଲେ, ତାହାର ପୁରାଣ ମହିମା ସ୍ମରଣ କଲେ, କେତେକାଂଶ ତାହିଁକ ମନରେ କଣ୍ଠିତ ଆଶ୍ୱାସନା ଆସେ । ଅତଏବ ଭୂମିକା କିଛି ଦୀର୍ଘ ହୋଇ ଯାଇଅଛି । ଆଶା କରେ, ପାଠକ ପାଠିକାଗଣ ବିରକ୍ତ ହେବେ ନାହିଁ । ” (୧୬)

ରାମଚନ୍ଦ୍ର ଆଚାର୍ଯ୍ୟଙ୍କ ପ୍ରବନ୍ଧର ଗଦ୍ୟଶୈଳୀକୁ ମୁଖ୍ୟତଃ ଦୁଇଗୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ । (କ) ଯୁକ୍ତି ମୂଳକ ଗଦ୍ୟ, (ଖ) ବ୍ୟାଖ୍ୟା ମୂଳକ ଗଦ୍ୟ । ଯୁକ୍ତି ମୂଳକ ଗଦ୍ୟରେ ତାଙ୍କର ଧର୍ମଦର୍ଶନ ଉପରେ ଆଧାରିତ ପ୍ରବନ୍ଧଗୁଡ଼ିକ ରଚିତ । ଏଥିରେ ପ୍ରାବନ୍ଧିକ ପାଠକ ଚିତ୍ତରେ ସୁବିଚାର ଶକ୍ତି ଦ୍ୱାରା ପ୍ରଭାବ ବିସ୍ତାର କରେ । ଏ ଧରଣର ଗଦ୍ୟର ସଫଳତା ପ୍ରାବନ୍ଧିକର ବୌଦ୍ଧିକତା ଉପରେ ନିର୍ଭରକରେ । ତାଙ୍କର ପ୍ରାଚୀନ ଭାରତର ଇତିହାସ ଓ ସଂସ୍କୃତିକୁ ନେଇ ରଚିତ ପ୍ରବନ୍ଧଗୁଡ଼ିକରେ ବ୍ୟାଖ୍ୟା ମୂଳକ ଗଦ୍ୟର ସଫଳ ପ୍ରୟୋଗ ଦେଖିବାକୁ ମିଳେ । ଏଥିରେ ପ୍ରବନ୍ଧଲେଖକ ତା'ର ପ୍ରତିପାଦ୍ୟ ବସ୍ତୁକୁ ସଂଗୃହୀତ ଉପାଦାନଦ୍ୱାରା ସାଧାରଣତଃ ବ୍ୟାଖ୍ୟା କରିଥାଏ । ଏ ଧରଣର ଗଦ୍ୟ ତଥ୍ୟ ବହୁଳ ହୋଇଥିବାରୁ ବେଳେ ବେଳେ ପାଠକ ପାଇଁ ଏହା ହୁଏ ବିରକ୍ତିକର ।

ସାହିତ୍ୟ ବିଚାର ବେଳେ ସାଧାରଣତଃ 'ସାଧୁତା' ଉତ୍ତମ ଗୁଣ ରୂପେ ବିବେଚିତ । ଏହା ଅନେକାଂଶରେ ଲେଖକର ଅଧ୍ୟୟନ ଓ ଯଥାର୍ଥ ଚିନ୍ତାଶକ୍ତି ଉପରେ ନିର୍ଭରଶୀଳ । ଏହାଛଡ଼ା ଲେଖକ ଭିତରେ ଏକ ସମ୍ବେଦନଶୀଳ ଚେତନା ଥିବା ଦରକାର । ରାମଚନ୍ଦ୍ର ଆଚାର୍ଯ୍ୟଙ୍କର ଏହି ତିନିଗୋଟି ଯାକ ଶକ୍ତି ଏକାଠି ଥିଲା । ତାଙ୍କ ପ୍ରବନ୍ଧମାନଙ୍କରେ ଗବେଷକର ଅନ୍ୱେଷା, ପଣ୍ଡିତର ବହୁଶାସ୍ତ୍ରଦର୍ଶିତା, ତରୁଣର ଉଦ୍ଦାମତା, ଐତିହାସିକର ସ୍ୱଦେଶ ପ୍ରାଣତା ଓ ଶିକ୍ଷକର ଉଦାରତା ପରିଲକ୍ଷିତ ।

ତରୁଣ ବୟସରୁ ସେ ପ୍ରବନ୍ଧ ରଚନାରେ ମନୋନିବେଶ କରିଥିଲେ । ସାଧନାରେ ବସି ସିଦ୍ଧିଲାଭ କରିବା ପୂର୍ବରୁ ଅକାଳରେ ସେଇ ତରୁଣ ବୟସରେ ଇହଲୋକରୁ ସେ ବିଦାୟ ନେଲେ । ଆଉ କିଛିକାଳ ବଞ୍ଚିଥିଲେ ହୁଏତ ସେ ଓଡ଼ିଆ ପ୍ରବନ୍ଧସାହିତ୍ୟକୁ ଅଧିକ ସମୃଦ୍ଧ କରିପାରିଥାନ୍ତେ । ତଥାପି ସ୍ୱଳ୍ପ ଜୀବନକାଳ ମଧ୍ୟରେ ତାଙ୍କର ସାଧନାରେ ଯେ ଓଡ଼ିଆ ପ୍ରବନ୍ଧ-ସାହିତ୍ୟ ଋଦ୍ଧିମନ୍ତ ହୋଇଛି—ଏହାକୁ ଅସ୍ୱୀକାର କରାଯାଇ ପାରିବ ନାହିଁ ।

—※—

୧୬ । ଉତ୍କଳ ସାହିତ୍ୟ—୨୭ଶ ଭାଗ/୫ମ ସଂଖ୍ୟା— ପ୍ରାଚୀନ ଭାରତର ପ୍ରଜାତନ୍ତ୍ର ଶାସନ—ପୃ-୪୮୬

# ଜାତୀୟ ଆଦର୍ଶ ଓ ପରମ୍ପରାର ପ୍ରବକ୍ତା : ପ୍ରାବନ୍ଧିକ

## ଗୋବିନ୍ଦ ତ୍ରିପାଠୀ

ପ୍ରାବନ୍ଧିକ ଗୋବିନ୍ଦ ତ୍ରିପାଠୀଙ୍କ ବିପୁଳ ସୃଷ୍ଟି ସମ୍ଭାରରେ ଜାତୀୟ ଆଦର୍ଶ ଓ ପରମ୍ପରା ପ୍ରତି ପ୍ରବଳ ଶ୍ରଦ୍ଧା ପରିଲକ୍ଷିତ । ତାଙ୍କର ଅଧିକାଂଶ ପ୍ରବନ୍ଧରେ ସେ ଜାତୀୟ ଆଦର୍ଶ, ପରମ୍ପରା ଓ ସଂସ୍କୃତିର ପ୍ରବକ୍ତା ରୂପେ ଉଭା ହୋଇଛନ୍ତି । ଜାତୀୟ ଜୀବନର ଦୁଷ୍କୃତି ତଥା ପାଶ୍ଚାତ୍ୟାଭିମୁଖୀ ଭାବଧାରାକୁ ସେ ବ୍ୟଙ୍ଗ, ବିଦ୍ରୂପ ଓ ତୀକ୍ଷ୍ଣ ନିରାବରଣ ସମାଲୋଚନାରେ କ୍ଷତବିକ୍ଷତ କରିଛନ୍ତି । ଉନ୍ମାର୍ଗଗାମୀ, ପଥଭ୍ରଷ୍ଟ ମାନବର ସାମାଜିକ ଜୀବନଧାରାକୁ ସେ ନିର୍ଭୀକ ଭାବରେ ଆଘାତ କରିଛନ୍ତି । ଜାତୀୟ ରୀତି ଓ ପରମ୍ପରାର ସୁରକ୍ଷାପାଇଁ ସେ ଜୀବନବ୍ୟାପୀ ସାହିତ୍ୟ ସାଧନା କରିଛନ୍ତି । ସତ୍ୟ ପାଇଁ ସେ ଥିଲେ ସତତ ସଚେତନ । ବାସ୍ତବ ଜୀବନ ପ୍ରତି ତାଙ୍କର ଥିଲା ଅହେତୁକ ମମତା । ପୁଣି ଜାତି ପ୍ରତି ଅତ୍ୟଧିକ ମୋହ, ସ୍ୱାଧୀନ ଜୀବନଧାରା ପ୍ରତି ପ୍ରଗାଢ଼ ଅନୁରାଗ ଓ ଅନୁଭୂତିର ଗଭୀର ଆତ୍ମସ୍ପର୍ଶରେ ତାଙ୍କର ପ୍ରବନ୍ଧଗୁଡ଼ିକ ଚିରଭାସ୍ୱର ।

( ୧ )

ପ୍ରାବନ୍ଧିକ ଗୋବିନ୍ଦ ତ୍ରିପାଠୀଙ୍କ ପ୍ରବନ୍ଧମାନସ ସହିତ ତାଙ୍କର ଜୀବନ ଇତିହାସ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ୧୮୯୯ ମସିହା ମଇମାସ ୧୩ ତାରିଖରେ ପୁରୀଜିଲ୍ଲାର ତଣ୍ଡାସ ରାମହଂସପୁର ଶାସନରେ ବଳଭଦ୍ର ମିଶ୍ରଙ୍କର ସପ୍ତମ ସନ୍ତାନ ରୂପେ ଗୋବିନ୍ଦ ଜନ୍ମ ଗ୍ରହଣ କରିଥିଲେ । ବାଲ୍ୟକାଳରେ ମାତୃ ବିୟୋଗ ଘଟିବାରୁ ଗୋବିନ୍ଦଙ୍କୁ ରାମଚନ୍ଦ୍ରପୁର ଶାସନର ହରିହର ତ୍ରିପାଠୀ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ । ପୋଷ୍ୟପୁତ୍ର ହୋଇଯାଇଥିବାରୁ ସେ ଗୋବିନ୍ଦ ମିଶ୍ରରୁ ହେଲେ ଗୋବିନ୍ଦ ତ୍ରିପାଠୀ । ତତ୍କାଳରେ ରାମଚନ୍ଦ୍ରପୁର ଶାସନ ଧର୍ମ, ସଂସ୍କୃତି ଓ ସାହିତ୍ୟ ଚର୍ଚ୍ଚାରେ ପୁରୀର ଷୋଳଶାସନ ମଧ୍ୟରେ ପ୍ରତିଷ୍ଠା ଅର୍ଜନ କରିଥିଲା ।

ଗୋବିନ୍ଦ ଏଇପରି ଏକ ସାଂସ୍କୃତିକ ବାତାବରଣ ମଧ୍ୟରେ ଛଅବର୍ଷ ଅତିବାହିତ କରି ୧୯୦୫ ମସିହାରେ ତାଙ୍କର ମାତୁଳାଳୟସ୍ଥ ଗଡ଼ଜାତ ଅଞ୍ଚଳ ଆଠଗଡ଼କୁ ଯାଇଥିଲେ । ଗୋବିନ୍ଦ ୧୯୦୮ ମସିହାରେ ଆଠଗଡ଼ର ପ୍ରାଥମିକ ବିଦ୍ୟାଳୟରେ ନାମ ଲେଖାଇଲେ । ସେ ବାଲ୍ୟକାଳରୁ ମେଳାପୀ, ମିଷ୍ଟଭାଷୀ ଓ ବୁଦ୍ଧିମାନ ଥିଲେ । ସେ ଆଠଗଡ଼ରେ ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିଥିଲେ । ହଠାତ୍ ଗୋବିନ୍ଦଙ୍କ ପିତା ହରିହରଙ୍କ ବିୟୋଗ ଘଟିବାରୁ ସେ ୧୯୧୧ ମସିହାରେ ରାମଚନ୍ଦ୍ରପୁର ପ୍ରତ୍ୟାବର୍ତ୍ତନ କରିଥିଲେ । ଗୋବିନ୍ଦ ଆଠଗଡ଼ରୁ ଆସି ସାକ୍ଷୀଗୋପାଳରେ ଅଧ୍ୟୟନ କଲେ । ସେଠାରୁ ୧୯୧୫ ମସିହାରେ ମାଇନର ପରୀକ୍ଷାରେ କୃତକାର୍ଯ୍ୟ ହୋଇ ସତ୍ୟବାଦୀ ବନ ବିଦ୍ୟାଳୟରେ ନାମ ଲେଖାଇଲେ ।

ସତ୍ୟବାଦୀ ବନବିଦ୍ୟାଳୟରେ ଅଧ୍ୟୟନ କାଳଟି ଗୋବିନ୍ଦ ଚନ୍ଦ୍ରଙ୍କ ଜୀବନର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହୁଏ । ଏହି ସମୟରେ ସତ୍ୟବାଦୀରେ ଗୋପବନ୍ଧୁ, ଗୋଦାବରୀଶ, ନୀଳକଣ୍ଠ, କୃପାସିନ୍ଧୁ, ଆଚାର୍ଯ୍ୟ ହରିହର ପ୍ରମୁଖଙ୍କ ଉଦ୍ୟମରେ ସମଗ୍ର ଦେଶରେ ଶିକ୍ଷା, ସେବା ଓ ଦେଶପ୍ରେମର ଜ୍ୟୋତି ପ୍ରଜ୍ୱଳିତ ହେଉଥାଏ । ସେହିଠାରେ ଗୋବିନ୍ଦଙ୍କ ଗ୍ରାମର ପ୍ରସିଦ୍ଧ ଶିକ୍ଷକ ପଣ୍ଡିତ ଲିଙ୍ଗରାଜ ମିଶ୍ର ମଧ୍ୟ ଶିକ୍ଷକତା କରୁଥିଲେ । ବନ ବିଦ୍ୟାଳୟରେ ଶିକ୍ଷାଦାନ ବ୍ୟତୀତ ସାହିତ୍ୟ ଚର୍ଚ୍ଚା ଥିଲା ଏକ ପ୍ରଧାନ ବିଷୟ । କୃପାସିନ୍ଧୁ ଛାତ୍ରମାନଙ୍କ ମଧ୍ୟରେ ପ୍ରବନ୍ଧ ରଚନାର ବାତାବରଣ ସୃଷ୍ଟି କରିବା ସକାଶେ 'History Club' ନାମରେ ଏକ କ୍ଲବ୍ ଗଠନ କରିଥିଲେ । ଛାତ୍ରମାନଙ୍କୁ ଐତିହାସିକ ଗବେଷଣା, ଅନୁଶୀଳନ ଓ ଆଲୋଚନାର ମାର୍ଗ ଶିକ୍ଷାଦେବା ଉଦ୍ଦେଶ୍ୟରେ ସେଠାରେ ବିଭିନ୍ନ ବିଷୟକ ପ୍ରବନ୍ଧମାନ ପଠିତ ହେଉଥିଲା । ଏହି ପ୍ରବନ୍ଧଗୁଡ଼ିକ ସତ୍ୟବାଦୀ ପତ୍ରିକାରେ ପ୍ରକାଶିତ ହେଉଥିଲା । ଏତଦ୍ ବ୍ୟତୀତ ଛାତ୍ର, ଶିକ୍ଷକ ପ୍ରତ୍ୟେକ ରାଷ୍ଟ୍ରର ମୁକ୍ତି ସମସ୍ୟା ବିଷୟରେ ଗଭୀର ଚିନ୍ତା କରୁଥିଲେ । ସେମାନେ ମାଟ୍ସିନିଙ୍କ ଦେଶହିତୈଷୀ ଭାବନାକୁ ଜୀବନର ମୂଳମନ୍ତ୍ର କରିଥିଲେ । ଯାହାର ସ୍ୱରୂପ ଥିଲା ଏଇଭଳି— "Without a country and without liberty we might perhaps produce some prophets of art, put no vital art. Therefore it was better for us to Consecrate our lives to the solution of problem—Are we to have a Country ?" ଆପଣାର ଦେଶ ଓ ସ୍ୱାଧୀନତା ବିନା ହୁଏତ କଳାବିଦ୍ୟାରେ କେତେକ ଦେବଦୂତ ଜନ୍ମନେଇ ପାରନ୍ତି ; କିନ୍ତୁ ପ୍ରକୃତ ଜୀବନ୍ତ କଳାର ବିକାଶ ସେଥିରେ ସମ୍ଭବ ନୁହେଁ । ସୁତରାଂ ଆମକୁ ଗୋଟିଏ

ସମସ୍ୟାର ସମାଧାନ ପାଇଁ ଜୀବନ ଉତ୍ସର୍ଗ କରିବାକୁ ହେବ ଏବଂ ସେହି ସମସ୍ୟାଟି ହେଉଛି—ଆମର ଜାତିର ହୋଇ ଗୋଟିଏ ରାଷ୍ଟ୍ର ରହିବ ତ ?

ଗୋବିନ୍ଦ ସତ୍ୟବାଦୀ ବନ ବିଦ୍ୟାଳୟରୁ ମାଟ୍ରିକ୍ ପାଶ୍ କରି ୧୯୧୯ ମସିହାରେ ରେଭେନ୍ସା କଲେଜରେ ନାମ ଲେଖାଇଲେ । ଏହି ସମୟରେ 'ଉତ୍କଳ ସାହିତ୍ୟ', 'ମୁକୁର', 'ସହକାର' ପ୍ରଭୃତି ପତ୍ରିକା କଟକରୁ ବାହାରୁଥାଏ । ଗୋବିନ୍ଦ ତ୍ରିପାଠୀ କଟକର କାଳୀଗଳିରେ ପଣ୍ଡିତ ଗୋବିନ୍ଦ ରଥଙ୍କ ଭଡ଼ାଘରେ ରହି ପଢୁଥିଲେ । ରେଭେନ୍ସା କଲେଜରେ ଅଧ୍ୟୟନ କାଳରେ ତାଙ୍କର ମାତୃ ବିୟୋଗ ଓ ପ୍ରଥମ ପତ୍ନୀଙ୍କ ବିୟୋଗ ଘଟିଥିଲା । ଯୌବନରେ ସେ ଆତ୍ମୀୟ ସ୍ୱଜନମାନଙ୍କୁ ହରାଇ ଏକାବେଳେକେ ନିଃସଙ୍ଗ ଓ ବନ୍ଧନଶୂନ୍ୟ ହୋଇ ପଡ଼ିଥିଲେ । ଏହି ନିଃସଙ୍ଗ ଜୀବନରେ ପୁସ୍ତକ ପଠନ ଓ ସାହିତ୍ୟ ସୃଷ୍ଟି ଥିଲା ତାଙ୍କର ଚିର ସହଚର । ଜୀବନର ଦୁଃଖ ଦୁର୍ଦ୍ଦଶାକୁ ଭ୍ରୂକ୍ଷେପ ନକରି ସେ କଠୋର ସାଧନା-ବଳରେ ୧୯୨୧ ମସିହାରେ ଆଇ. ଏ. ପରୀକ୍ଷାରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହେଲେ । ଏଥିରୁ ଗୋବିନ୍ଦ ତ୍ରିପାଠୀଙ୍କ ଅଧ୍ୟୟନ ମନୋବୃତ୍ତି ସହଜରେ ଉପଲବ୍ଧ । ଗୋବିନ୍ଦ ଇଂରାଜୀ ଅନର୍ସ ନେଇ ରେଭେନ୍ସା କଲେଜରେ ବି. ଏ. ଅଧ୍ୟୟନ କଲେ । ଗୋବିନ୍ଦଙ୍କ ଇଂରାଜୀ ଜ୍ଞାନ ରେଭେନ୍ସା କଲେଜର ତତ୍କାଳୀନ ଇଂରାଜୀ ଅଧ୍ୟାପକ 'Whitlock' ସାହେବଙ୍କୁ ଅଭିଭୂତ କରିଥିଲା ।

ଗୋବିନ୍ଦ ତ୍ରିପାଠୀଙ୍କ ରେଭେନ୍ସା କଲେଜରେ ଅଧ୍ୟୟନ ସମୟ ହେଉଛି ପ୍ରଥମ ବିଶ୍ୱଯୁଦ୍ଧର (୧୯୧୪—୧୯୧୮) ପରବର୍ତ୍ତୀ ସମୟ । ଏହି ସମୟରେ ମହାତ୍ମାଗାନ୍ଧୀଙ୍କ ଚିନ୍ତାଧାରାରେ ଅନୁପ୍ରାଣିତ ହୋଇ ଓଡ଼ିଆ ଯୁବକମାନେ ସ୍ୱଦେଶ ଆନ୍ଦୋଳନରେ ଅଂଶ ଗ୍ରହଣ କରିଥିଲେ । ମଧୁବାବୁ, ବିଶ୍ୱନାଥ ମିଶ୍ର, ଉତ୍କଳମଣି ଗୋପବନ୍ଧୁ, ନୀଳକଣ୍ଠ ପ୍ରମୁଖ ଯୁବକମାନେ ଗାନ୍ଧିଜୀଙ୍କ ଆଦର୍ଶବାଦ ଓ ଦେଶ-ପ୍ରେମର ଧାରା ଓଡ଼ିଶାରେ ପ୍ରଚାର କରୁଥିଲେ । ଏମାନଙ୍କ ସଂସ୍କାରବାଦୀ ଚିନ୍ତାଧାରା, ଉତ୍କଳ ସମ୍ମିଳନୀର ଜାତିଗଠନ ଦୃଷ୍ଟିକୋଣ ସମାଜରେ ବିଶେଷ ଆଦୃତ ହେଉଥିଲା । ଗୋବିନ୍ଦ ବି. ଏ. ଶ୍ରେଣୀର ଛାତ୍ର ହେଲେ ସୁଦ୍ଧା ଏହିମାନଙ୍କ ସହିତ ଯୋଗସୂତ୍ର ରଖିଥିଲେ । ସେ ସ୍ୱଦେଶୀ ଭାବଧାରାରେ ଅନୁପ୍ରାଣିତ ହୋଇ ଖଦଡ଼ ପୋଷାକ ପରିଧାନ କରୁଥିଲେ । ଗୋବିନ୍ଦ ମଧ୍ୟ ସଂସ୍କାରକର ଦୃଷ୍ଟି ନେଇ, ତତ୍କାଳରେ ବିଲାତ ଯାଇ, ଜାତିରୁ ନିର୍ବାସିତ ହୋଇଥିବା ବାରିଷ୍ଟର ବିଶ୍ୱନାଥ ମିଶ୍ରଙ୍କ କନ୍ୟାଙ୍କୁ ଦ୍ୱିତୀୟବାର ବିବାହ କରିଥିଲେ । ଗୋବିନ୍ଦ ବି. ଏ. ଶ୍ରେଣୀରେ ଅଧ୍ୟୟନ କାଳରେ ତାଙ୍କର ପ୍ରଥମ ପ୍ରବନ୍ଧ 'ସ୍ୱର୍ଣ୍ଣ ଓ ରୌପ୍ୟ ମୁଦ୍ରା' ୧୯୨୨ ମସିହାରେ

ସନ୍ତୋଷକାର ପରୀକ୍ଷାରେ ଆତ୍ମପ୍ରକାଶ କରିଥିଲେ । ଜଣେ ମେଧାବୀ ଛାତ୍ର ଭାବରେ ସେ ବି. ଏ. ପରୀକ୍ଷାରେ ସର୍ବୋଚ୍ଚ ନମ୍ବର ରଖି ବିଶ୍ୱବିଦ୍ୟାଳୟର କୃତୀ ଛାତ୍ର ରୂପେ ସମ୍ମାନିତ ହୋଇଥିଲେ । ପରେ ସେ ୧୯୨୫ ମସିହାରେ ମଧ୍ୟ ପାଟନା ବିଶ୍ୱବିଦ୍ୟାଳୟରୁ ଇଂରାଜୀ ଏମ୍. ଏ. ରେ ପ୍ରଥମ ହୋଇଥିଲେ ।

ଗୋବିନ୍ଦ ତ୍ରିପାଠୀଙ୍କର କର୍ମ ବହୁଳ ଜୀବନ ୧୯୨୭ ମସିହାରେ ସରକାରଙ୍କର ଜଣେ ପଦସ୍ଥ କର୍ମଚାରୀ ରୂପେ ଆରମ୍ଭ ହୋଇଥିଲା । ସେ ଓଡ଼ିଶା ତଥା ଓଡ଼ିଶା ବାହାରର ବହୁ ସ୍ଥାନରେ କର୍ମ କରିଛନ୍ତି । ସେ ତାଙ୍କ ଜୀବନରେ ସର୍ବଦା ସ୍ୱାଧୀନ ଭାବନା ଓ ଜାତୀୟ ଚିନ୍ତାଧାରାକୁ ସ୍ୱାଗତ କରିଛନ୍ତି । ସେ ଚାକିରି ଜୀବନରେ କର୍ମଚାରୀମାନଙ୍କର ସାଂସ୍କୃତିକ ଜାଗରଣ ପାଇଁ ଓ ଅବସର ବିନୋଦନ ନିମନ୍ତେ ଚେଷ୍ଟା କରିଥିଲେ । ଜଣେ ଖୋର୍ଦ୍ଧାରେ ଥିବାସମୟରେ 'ଖାରବେଳ' ନାମରେ ଏକ ଐତିହାସିକ ନାଟକ ରଚନା କରି, ନିଜ ନିର୍ଦ୍ଦେଶନାରେ ମଞ୍ଚସ୍ଥ କରିଥିଲେ । ତାଙ୍କର ଏ ନାଟକଟି ହସ୍ତଲିଖିତରେ ବିଦ୍ୟମାନ । ସେ ଓଡ଼ିଶା ବାହାରେ ଟାଟା, ଦ୍ୱାରଭଙ୍ଗା, ସାସାରାମ, ହଜାରିବାଗ ପ୍ରଭୃତି ସ୍ଥାନରେ ଥିବାବେଳେ ସେଠାକାର ଓଡ଼ିଆମାନଙ୍କର ବୌଦ୍ଧିକ ଓ ସାଂସ୍କୃତିକ ବିକାଶପାଇଁ ବହୁବିଧ ଉଦ୍ୟମ କରିଥିଲେ । ଏଇପରି ଏକ କର୍ମବହୁଳ ଜୀବନର ଅବସାନ ୧୯୬୨ ମସିହା ସେପ୍ଟେମ୍ବର ନଅ ତାରିଖରେ ଘଟିଥିଲା । ତାଙ୍କର କର୍ମମୁଖର ଜୀବନ ସମ୍ବନ୍ଧରେ ତାଙ୍କପୁତ୍ର ନାଟ୍ୟକାର ବ୍ୟୋମକେଶ ତ୍ରିପାଠୀଙ୍କ ଭାଷାରେ କୁହାଯାଇପାରେ,''ଶୈଶବରୁ ଯିଏ ଅବହେଳିତ, କୈଶୋରରେ ଯିଏ ଅଭାବଗ୍ରସ୍ତ, ଯୌବନରେ ଉଚ୍ଚାଭିଳାଷୀ ଓ ସଂଗ୍ରାମୀ, ସ୍ୱାଧୀନତା ପୂର୍ବରୁ ଯିଏ ସ୍ୱଦେଶ ପ୍ରେମୀ, ସ୍ୱାଧୀନତା ପରେ ଯିଏ ଦିଗ୍‌ଭ୍ରାନ୍ତ, ବିହ୍ୱଳ, ଚାକିରିରୁ ଅବସରପ୍ରାପ୍ତ ଜୀବନରେ ଯିଏ ଅଭାବ ଓ ଅଶାନ୍ତି ଜର୍ଜ୍ଜରିତ, ଆଜନ୍ମ ଯେ ସ୍ନେହ କାଙ୍ଗାଳ, ଜୀବନରେ ପ୍ରତିଟି ମୁହୂର୍ତ୍ତ ଯେ ଶିଶୁ ପରି ହାସ୍ୟୋଚ୍ଛଳ, ଜନ୍ମ ମୃତ୍ୟୁରେ ଯିଏ ନିଃସଙ୍ଗ, ସେଇ ହେଉଛନ୍ତି ଗୋବିନ୍ଦ ତ୍ରିପାଠୀ ।''

( ୨ )

ଗୋବିନ୍ଦ ତ୍ରିପାଠୀଙ୍କ ପ୍ରବନ୍ଧଗୁଡ଼ିକୁ ଆଲୋଚନାର ସୁବିଧା ଦୃଷ୍ଟିରୁ ମୁଖ୍ୟତଃ ତିନିଭାଗରେ ବିଭକ୍ତ କରାଯାଇପାରେ । (କ) ଆର୍ଥନୀତିକ ପ୍ରଗତି ମୂଳକ ପ୍ରବନ୍ଧ, (ଖ) ସଂସ୍କାର ଧର୍ମୀ ଜାତୀୟ ଜାଗରଣ ମୂଳକ ମନନ୍ତ୍ରସ୍ତ ପ୍ରବନ୍ଧ, (ଗ) ଆନ୍ତର୍ଜାତୀୟ ଚିନ୍ତା ଚେତନା ଦ୍ୟୋତକ ଆଧୁନିକ ସଭ୍ୟତା ବିଷୟକ ମନନ୍ତ୍ରସ୍ତ ପ୍ରବନ୍ଧ ।

ଗୋବିନ୍ଦ ତ୍ରିପାଠୀ ତରୁଣ ଜୀବନରୁ ପ୍ରବନ୍ଧ ରଚନାରେ ମନୋନିବେଶ କରିଥିଲେ । ସେ ସମୟରେ ସେ ଦେଶ ବିଦେଶର ଆର୍ଥନୀତିକ ସମସ୍ୟାମାନଙ୍କୁ

ନେଇ ଆର୍ଥନୀତିକ ପ୍ରବନ୍ଧମାନ ରଚନା କରିଥିଲେ । ସେସବୁ ପ୍ରବନ୍ଧମାନଙ୍କ ମଧ୍ୟରେ 'ସ୍ୱର୍ଣ୍ଣ ଓ ରୌପ୍ୟ ମୁଦ୍ରା', 'ସରକାରଙ୍କ ଘର ଖର୍ଚ୍ଚ', (ମୁକୁର—୯/୪ ପୃ ୧୨୭ ) 'ରେଲବାଇ ଓ ଭାରତ ସରକାର', ( ମୁକୁର—୧୯/୧—ପୃ-୭ ), 'ପୁରୁଣା କଥା' ( ଉତ୍କଳ ସାହିତ୍ୟ—୩୨/୨—ପୃ ୮୧ ), ପ୍ରଭୃତି ପ୍ରଧାନ । ଏହି ପ୍ରବନ୍ଧଗୁଡ଼ିକ ବସ୍ତୁନିଷ୍ଠ । ଏଥିରେ ଲେଖକ ବ୍ରିଟିଶ୍ ରାଜତ୍ୱକାଳୀନ ଭାରତୀୟ ଅର୍ଥନୀତିର ତର୍ଜମା କରିଛନ୍ତି । ଏସବୁ ପ୍ରବନ୍ଧରେ ସେ ତଥ୍ୟ ସଚେତନ । ସମକାଳୀନ ପତ୍ରପତ୍ରିକା, ବିଭିନ୍ନ ରିପୋର୍ଟମାନଙ୍କରୁ ବିଷୟ ଆହରଣ କରି ସେ ଓଡ଼ିଆରେ ଏ ଧରଣର ପ୍ରବନ୍ଧ ଲେଖିଛନ୍ତି । ଏସବୁ ପ୍ରବନ୍ଧରେ ତଥ୍ୟର ଗୁରୁତ୍ୱରେ ଗୋବିନ୍ଦ ତ୍ରିପାଠୀଙ୍କ ବକ୍ତବ୍ୟ ଅନେକାଂଶରେ ଅସ୍ପଷ୍ଟ । ସ୍ୱାଧୀନ ଚିନ୍ତାଧାରା, ନିର୍ଭୀକ ମନ୍ତବ୍ୟ ଏସବୁ ପ୍ରବନ୍ଧରେ ନଥିଲେ ସୁଦ୍ଧା, ସେ ଧରଣର ପ୍ରବନ୍ଧ ବୋଧହୁଏ ଗୋବିନ୍ଦ ତ୍ରିପାଠୀଙ୍କ ବ୍ୟତୀତ ଅନ୍ୟ କେହି ତତ୍କାଳରେ ଲେଖୁ ନଥିଲେ । ଏଥି ସକାଶେ ଗୋବିନ୍ଦ ତ୍ରିପାଠୀଙ୍କୁ ଓଡ଼ିଆ ପ୍ରବନ୍ଧ ସାହିତ୍ୟରେ ଆର୍ଥନୀତିକ ପ୍ରଗତି ମୂଳକ ପ୍ରବନ୍ଧର ଆଦିସ୍ରଷ୍ଟା କହିଲେ ବହୁଭାଷଣ ହେବନାହିଁ ।

ଗୋବିନ୍ଦ ତ୍ରିପାଠୀ ଥିଲେ ମୁଖ୍ୟତଃ ସଂସ୍କାରକ । ତାଙ୍କର ସଂସ୍କାର ପ୍ରୟାସ ଦୃଷ୍ଟିଭଙ୍ଗି 'ବହୁଟିଆ', 'ଗୋପବନ୍ଧୁଙ୍କ ଶ୍ରାଦ୍ଧ', 'ଦାଢ଼ି', 'ଧରମ ଧରମ', 'କଦଳୀ', 'ଆମ୍ବ', 'ବୋମା', 'ଛେନାଗୁଡ଼', 'ଅଦା ବେପାର', 'ଆକାଶ କହିଁଆ' ପ୍ରଭୃତି ପ୍ରବନ୍ଧମାନଙ୍କରେ ଉତ୍କୀର୍ଣ୍ଣ ।

ଗୋବିନ୍ଦ ତ୍ରିପାଠୀଙ୍କ 'ବହୁଟିଆ' ଏକ ଜାତୀୟ ଜାଗରଣ ମୂଳକ ପ୍ରବନ୍ଧ । ସେ ଓଡ଼ିଆମାନଙ୍କର ଅତୀତ ବର୍ତ୍ତମାନର ଜୀବନଧାରାର ଏକ ତୁଳନାତ୍ମକ ବିଶ୍ଳେଷଣ ବହୁଟିଆ ପ୍ରବନ୍ଧରେ କରିଛନ୍ତି । ସେ ବହୁଟିଆ ସଂସ୍କୃତିକୁ ଓଡ଼ିଶାର ଜାତୀୟ ସଂସ୍କୃତି ରୂପେ ପ୍ରତିପାଦନ କରିଛନ୍ତି । ଆଧୁନିକ ନବ୍ୟସଭ୍ୟ ଯୁବସମ୍ପ୍ରଦାୟ ବହୁଟିଆ ସଂସ୍କୃତିକୁ ଉପେକ୍ଷା କରି ପରାନୁସରଣ କରୁଥିବାରୁ ସେ ଦୁଃଖ ପ୍ରକାଶ କରିଛନ୍ତି । ଏଥିରେ ପ୍ରାବନ୍ଧିକଙ୍କର ନବ୍ୟସଭ୍ୟ ସମ୍ପ୍ରଦାୟ ପ୍ରତି ଚେତାବନୀ ରହିଛି । ଏଥିରେ ପ୍ରାବନ୍ଧିକ ସେମାନଙ୍କୁ ପ୍ରାଚୀନ ପରମ୍ପରା ଭିତ୍ତିରେ ନୂତନ ସଂସ୍କୃତିର ପ୍ରତିଷ୍ଠା ପାଇଁ ଆହ୍ୱାନ ଦେଇଛନ୍ତି ।

ଗୋବିନ୍ଦ ତ୍ରିପାଠୀଙ୍କର ଜାତୀୟ ଜାଗରଣର ସଫଳ ସ୍ୱପ୍ନ 'ଗୋପବନ୍ଧୁଙ୍କ ଶ୍ରାଦ୍ଧ' ପ୍ରବନ୍ଧରେ ପ୍ରକଟିତ । ଏହି ପ୍ରବନ୍ଧଟି ଚଳିତ ଶତକର ବିଶିଷ୍ଟ ପ୍ରାବନ୍ଧିକ Aldous Husleyଙ୍କ 'Centenary' ପ୍ରବନ୍ଧର ଛାୟାରେ ରଚିତ । ଏଥିରେ ମହାପୁରୁଷମାନଙ୍କ ଶ୍ରାଦ୍ଧ କପରି ପ୍ରଶଂସାମୂଳକ ହୋଇଛି, ତାହାହିଁ ପ୍ରକାଶିତ

ହୋଇଛୁ । ମହାପୁରୁଷମାନଙ୍କ ପ୍ରତି ଭକ୍ତି ଓ ଶ୍ରଦ୍ଧା ଅପେକ୍ଷା ନିଜର ଆତ୍ମ ବିଜ୍ଞାପନ ଏହି ଶ୍ରାଦ୍ଧମାନଙ୍କରେ ବେଶ୍ ପ୍ରସ୍ଫୁଟିତ ହେଉଛି । ଶ୍ରାଦ୍ଧର ଅନ୍ତର୍ନିହିତ ଭାବ ଗୋବର୍ଦ୍ଧନଙ୍କ ଶ୍ରାଦ୍ଧରେ ପ୍ରତିଫଳିତ ହୋଇପାରୁନାହିଁ । 'ଆପଣାର ରୁଚିାନୁରୂପ ମଣିଷ—'ଏଇ ଭାବ ଆଜ୍ଞ ମଣିଷ ସମାଜରେ ନାହିଁ । ଯେତେଦୂର ମନେହୁଏ, ପ୍ରାବନ୍ଧିକ ଆନ୍ତରିକତା ବିହୀନ ବାଧ୍ୟ ବାଧକତା ଭିତ୍ତିକ ଶ୍ରାଦ୍ଧକୁ ପସନ୍ଦ କରିପାରି ନାହାନ୍ତି । କାରଣ ଗୀତାରେ କୁହାଯାଇଛି ; "ଶ୍ରଦ୍ଧା ମୟୋଽୟଂ ପୁରୁଷୋ ଯୋ ଯଚ୍ଛ୍ରଦ୍ଧଃ ସ ଏବ ସଃ ।" ( ଗୀତା-୧୭/୩ ) ପ୍ରାବନ୍ଧିକ ବିଶିଷ୍ଟ ବ୍ୟକ୍ତିଙ୍କ ଶ୍ରାଦ୍ଧରେ ସେମାନଙ୍କର ଆଦର୍ଶ, ଚିନ୍ତାଧାରାକୁ କର୍ମରେ ପ୍ରୟୋଗ କରି ସଫଳ କରିବାକୁ ଆହ୍ୱାନ ଦେଇଛନ୍ତି । ସେମାନଙ୍କ ଜୀବନଧାରାକୁ ସମକାଳୀନ ପରିସ୍ଥିତିରୁ ବିଶ୍ଳେଷଣ କରିବା ପାଇଁ ତାଙ୍କର ପ୍ରେରଣା ଉଲ୍ଲେଖ-ଯୋଗ୍ୟ । ସେ ଏ ସମ୍ପର୍କରେ କହନ୍ତି—"ଆମେ ଅତୀତର କଥା ଭାବୁ ବହୁତ, ଆଧାତ୍ମର ବିଷୟ ଓ ପାରମ୍ପରିକତା ଆମକୁ ଜଡ଼ କରିଦିଏ । ଆଦର୍ଶ ଭବିଷ୍ୟତ, ବ୍ୟାବହାରିକତା ଓ ସଦାଗ୍ରହ ଆମକୁ ପଥଭ୍ରଷ୍ଟ କରାଏ । ଆମେ ଜୀବନର କଥା, ଚକ୍ ଚକ୍ ଏଇ ବର୍ତ୍ତମାନର କଥା ଭୁଲିଯାଉ ।"

ପ୍ରାବନ୍ଧିକ ତ୍ରିପାଠୀ ପ୍ରାଚୀନ ସଂସ୍କୃତିର ଭଲକୁ ଭଲ ଓ ମନ୍ଦକୁ ମନ୍ଦ କହିବାକୁ ଯେଉଁଳି ପଶ୍ଚାତପଦ ହୋଇନାହାନ୍ତି; ସେହିପରି ଆଧୁନିକ ସଂସ୍କୃତିର ଉପରଠାଉରିଆ ଚକ୍ ଚକ୍ ଭାବ ବ୍ୟତୀତ ତା'ର ଗୁଣକୁ ପ୍ରଶଂସା କରିବାକୁ ସଂକୋଚବୋଧ କରିନାହାନ୍ତି । ପ୍ରାଚୀନ ପରମ୍ପରାରେ ରହିଥିବା ଅନ୍ଧବିଶ୍ୱାସ ସହିତ ସେ କୌଣସି ମତେ ସାଲିସ କରିନାହାନ୍ତି । ତାଙ୍କର ଏ ପ୍ରକାର ଦୃଷ୍ଟିଭଙ୍ଗୀର ସ୍ୱାକ୍ଷର ଦାଢ଼ୀ ପ୍ରବନ୍ଧରେ ରହିଛି । ଏ ପ୍ରବନ୍ଧରେ ସେ ପ୍ରାସଙ୍ଗିକ ଭାବରେ ନୀଳକଣ୍ଠଙ୍କ 'ମୋ ଜୀବନ'ର ସୂଚନା ଦେଇଛନ୍ତି । 'ଦାଢ଼ି' ପ୍ରବନ୍ଧରେ ସେ ଏ ଜାତିର କୁସଂସ୍କାର ଓ ଅନ୍ଧବିଶ୍ୱାସକୁ ଘଟକ କରାଇଛନ୍ତି । ଏଥିରେ ସେ ରକ୍ଷଣଶୀଳତାକୁ ଯେପରି ବିଦ୍ରୂପ କରିଛନ୍ତି; ସେହିପରି ଯୁଗ ଅନୁରୂପ ସରଳ ଜୀବନଧାରାକୁ ସେ ପ୍ରଶଂସା କରିଛନ୍ତି ।

ପ୍ରାବନ୍ଧିକ ତାଙ୍କର 'ଧରମ ଧରମ' ପ୍ରବନ୍ଧରେ ଅଧୁନାତନ ସମାଜର ଜୀବଧର୍ମକୁ ବିଶ୍ଳେଷଣ କରିଛନ୍ତି । ସେ ଧର୍ମନାମରେ ପାଶ୍ଚାତ୍ୟ ଧର୍ମୀୟ ଚିନ୍ତାଧାରାକୁ ଗ୍ରହଣ କରିନାହାନ୍ତି । ସେ ଭାରତର ଧର୍ମ ନିରପେକ୍ଷତାକୁ କେତେକାଂଶରେ ଏଥିରେ ପ୍ରଶଂସା କରିଛନ୍ତି । ଏ ପ୍ରବନ୍ଧର ଆରମ୍ଭରେ ସେ କହନ୍ତି; 'ଡିଭ ସିବର୍ନ, ଚମକ ପଡ଼ିବନ, ଏ ଧର୍ମ କଥା ନୁହେଁ । ମୋଟେ ନୁହେଁ । ଆମର ଏ ଧର୍ମନିରପେକ୍ଷ ରାଷ୍ଟ୍ର, ସେ କଥା ମୁଁ ଜାଣେ, ସେଇଥିଁକୁ ମୁଁ ଖୁବ୍ ପସନ୍ଦ କରେ ମଧ୍ୟ ।" (ନବ

ଜୀବନ—୪/୮-ପୃ ୫୦୦) ପ୍ରାବନ୍ଧିକ ଧର୍ମନିରପେକ୍ଷ ନାମରେ ଚାଲିଥିବା ଭ୍ରଷ୍ଟାଚାର, ଅନୀତି ବିରୁଦ୍ଧରେ ଏଥିରେ ସ୍ୱର ଉତ୍ତୋଳନ କରିଛନ୍ତି । ସେ ଧର୍ମକୁ ସଂସାରର ନୈତିକ ପରମ୍ପରା ରୂପରେ ଦେଖିଛନ୍ତି । ଏ ପ୍ରବନ୍ଧର ପ୍ରଥମ ଭାଗରେ ସେ ମାନବର ସାମାଜିକ ଧର୍ମକୁ ଯଥାର୍ଥ ରୂପ ଦେବାକୁ ଚେଷ୍ଟା କରିଛନ୍ତି । ସେ ଧର୍ମ ନାମରେ ଚାଲି ଆସୁଥିବା କୁସଂସ୍କାରମାନଙ୍କୁ ନଗ୍ନ ସମାଲୋଚନା କରିଛନ୍ତି । ପ୍ରବନ୍ଧର ଶେଷ ପର୍ଯ୍ୟାୟରେ ସେ ଲେଖିଛନ୍ତି, "ତୁମେ ଦେଖିଲ, ମୁଁ ଧରମ ଧରମ ଶିରୋନାମାରେ ଧର୍ମ କଥା ଲେଖିନି । ଲେଖିଛି କେବଳ ଅଧର୍ମ କଥା । ପାପର କଥା । ନରକଗାମୀ ହେବ, ତା ଲାଗି ଚିନ୍ତା ନାହିଁ । ମୋ ସାଙ୍ଗକୁ ଅନେକ ଅଛନ୍ତି । ତୁମେ ବି ।" (ନବ ଜୀବନ—୪/୮—ପୃ ୫୦୭) 'ଧରମ ଧରମ' ପ୍ରବନ୍ଧର ଦ୍ୱିତୀୟ ଭାଗରେ ପ୍ରାବନ୍ଧିକ ଆମ ସମାଜର ତଥାକଥିତ ପାଶ୍ଚାତ୍ୟ ଜୀବନ ଚର୍ଯ୍ୟାର ଧର୍ମକୁ ସମାଲୋଚନା କରିଛନ୍ତି । ସେ ମାର୍କିନ ରମଣୀ ମାନଙ୍କ ବେଶଭୂଷାକୁ ତୀବ୍ର ଭାବରେ ଆଘାତ କରିଛନ୍ତି । ସଭ୍ୟତା ନାମରେ ନଗ୍ନତା, ସଂସ୍କୃତି ନାମରେ ବର୍ବର ଆଚରଣ ସେମାନଙ୍କର ଦୈନନ୍ଦିନ ଜୀବନର ଧର୍ମ ହୋଇଛି ବୋଲି ପ୍ରାବନ୍ଧିକ କହିଛନ୍ତି । ସେ ଆଲୋଚନା ପ୍ରସଙ୍ଗରେ କହିଛନ୍ତି; "ମାର୍କିନ ଦେଶର ଓ ବିଲାତର ରମଣୀମାନେ, ନାଟଆମାନେ, ଦ୍ରସିକାମାନେ କପଡ଼ ଲୁଗା ପିନ୍ଧୁଛନ୍ତି ? ଗୁଡ଼ାର ଆଉ ଦୁଇଟା ଘୋଡ଼ାଇବା ଲାଗି ନାଇଲନ କନାର ଖଣ୍ଡିଏ ଦ୍ରାପିଏ । ତା'ଲାଗି ଲେଡ଼ୀ ମାନେ ଅଧଗଜେ କନା ।" (ନବଜୀବନ—୪/୧୦—ପୃ ୭୬୧) ପ୍ରାବନ୍ଧିକ ଏହି ପ୍ରବନ୍ଧରେ ପୂର୍ଣ୍ଣ, ଭାବାତୀତ, ଭେଦଭାବରହିତ ସଂପୂର୍ଣ୍ଣ ଜୀବନର ଉପଲବ୍ଧି ପାଇଁ ଇଙ୍ଗିତ ଦେଇଛନ୍ତି । ବ୍ୟଙ୍ଗ ବିଦ୍ରୂପ ଛଳରେ ଏ ଇଙ୍ଗିତ ନିଷ୍ପ୍ରଭ ପ୍ରତୀତ ହେଲେ ମଧ୍ୟ ଯୁଗୋପଯୋଗୀ । ଆଧୁନିକ ମାନବରେ ମନୋରାଜ୍ୟରେ ଧର୍ମର ପଥ ଦେଇ ଯେଉଁ କାମନା-ବାସନା ଉଦ୍ରେକ ହୋଇଛି, ତାହାକୁ ପ୍ରାବନ୍ଧିକ ନିପାଠ ଏଥିରେ ମନସ୍ତାତ୍ତ୍ୱିକ ଦିଗରୁ ବିଶ୍ଳେଷଣ କରିଛନ୍ତି । ଧର୍ମର ଜନକଲ୍ୟାଣ ରୂପ ପରିବର୍ତ୍ତେ ଆଧ୍ୟାତ୍ମିକ କାମୁକତା ଏ ବିଶ୍ୱକୁ ଗ୍ରାସ କରିଥିବା ବିଷୟ ପ୍ରାବନ୍ଧିକ ଏଥିରେ ସ୍ପଷ୍ଟ ରୂପେ ସ୍ୱୀକାର କରିଅଛନ୍ତି ।

ପ୍ରାବନ୍ଧିକ 'କଦଳୀ' ଓ 'ଆମ୍ବ' ଏହି ପ୍ରବନ୍ଧ ଦ୍ୱୟରେ ଉତ୍କଳୀୟ ଜାତୀୟତାର ସ୍ୱପ୍ନ ଦେଖିଛନ୍ତି । କଦଳୀ ପ୍ରବନ୍ଧରେ ସେ ଦଳୀୟ ରାଜନୀତିର ପଙ୍କିଳ ରୂପକୁ ପ୍ରକାଶ କରିଛନ୍ତି । ସ୍ୱାଧୀନତା ପରେ ଦେଶ ଏକାବେଳେକେ ବିପର୍ଯ୍ୟସ୍ତ ହୋଇ ପଡ଼ିଥିବା କଥା ସେ ଏ ପ୍ରବନ୍ଧରେ କହିଛନ୍ତି । ସେ କଦଳୀକୁ ଛଦ୍ମତାର ପ୍ରତୀକ ରୂପେ ଏ ପ୍ରବନ୍ଧରେ ବ୍ୟବହାର କରିଛନ୍ତି । ଏ ଜାତିର ସର୍ବ ସାଧାରଣଙ୍କ ଠାରୁ ଆରମ୍ଭ କରି ନେତା, ଦଳ ସମସ୍ତେ ଏଇ ଛଦ୍ମ ଆବରଣ

ଭିତରେ ରହିଛନ୍ତି । କଦଳୀର ସନ୍ଧାନ ସବୁଠି ରହିଛି । ଯେପରି; "କ ରୁ କଦଳୀ; ସେମିତି କ ରୁ କଂଗ୍ରେସ, କମ୍ୟୁନିଷ୍ଟ, ଜଙ୍ଗ, କିଶାନ୍ । ସୁତରାଂ କଦଳୀ କଥା ଯାହା କଂଗ୍ରେସ ଦଳ, କମ୍ୟୁନିଷ୍ଟ ଦଳ, କିଶାନ୍ ଦଳ, ଜଙ୍ଗ୍ ଦଳ କଥା ମଧ୍ୟ ସେଇଆ । କାହାର କିଛି ମାତ୍ର ଦୁଃଖ କରିବାର ନାହିଁ । ସମସ୍ତେ କଦଳୀ । ଦେଶ ଗୋଟାକ ଯାକ ଏଇ କଦଳୀକୁ ମୁଠେଇ ଗୁଣ୍ଡୁଛନ୍ତି । ବାହାବା, ବାହାବା, ଆହାହା ହେଉଛନ୍ତି ।" (ଡଗର— ୨୩/୬-ପୃଷ୍ଠା) କଦଳୀର ଏଇ ଛଦ୍ମ ଆବରଣରେ ମଣିଷ ତା'ର ଶୌର୍ଯ୍ୟ, ବୀର୍ଯ୍ୟ ସବୁକିଛି ଭୂଲିଯାଇଛି । 'କଦଳୀ' ପ୍ରବନ୍ଧର ଶେଷ ପର୍ଯ୍ୟାୟରେ ପ୍ରାବନ୍ଧିକ ତ୍ରିପାଠୀ କହନ୍ତି; "ଧନ୍ୟ ସେ କଦଳୀ! ଯେ ମଣିଷକୁ ମେଣ୍ଢା କରିପାରେ, ଜୟଜୟ ସେଇ 'କଦଳୀର । ଯେଉଁ ତା'ର ବାସନାରେ ଖାଲି ସାରା ସଂସାରଟାକୁ କଣ୍ଟା ସିଜୁ ଉପରେ ନିଘୋଡ଼ ନିଦରେ ମଧ୍ୟ ଶୁଆଇ ଦେଇପାରେ । ଜିନ୍ଦାବାଦ ସେଇ କଦଳୀର । ଯେ କି ତୁମ ଆଖିରେ ଶୁଖୁଆ କଣ୍ଟା ମାରି ତୁମକୁ ଅନ୍ଧ କରି ଦେଇପାରେ ।" (ଡଗର-୨୩/୬ପୃ-୮) ସ୍ୱାଧୀନତୋତ୍ତର ଭାରତର ଅବକ୍ଷୟ ଚିତ୍ର ଏଇ କଦଳୀ ପ୍ରବନ୍ଧରେ ସ୍ପଷ୍ଟ ରୂପାୟିତ ହୋଇଅଛି । 'ଆମ୍ବ' ପ୍ରବନ୍ଧରେ ସେ ଓଡ଼ିଆ ଜାତିର ମହତ୍ତ୍ୱର ଦୃଷ୍ଟିଭଙ୍ଗୀକୁ ବ୍ୟକ୍ତ କରିଛନ୍ତି । ବିଶ୍ୱଜନୀନ ଭାବଧାରା, ଅପର ପ୍ରତି ଶ୍ରଦ୍ଧା, ପ୍ରେମ ଭାବ ଓ ସରଳ ନିରାଡ଼ମ୍ବର ଜୀବନ ଯାତ୍ରା—ଏ ଜାତିର ଜୀବନ ଚର୍ଯ୍ୟା । ଏ ସନ୍ଦର୍ଭେ ବଙ୍ଗଳା, ହିନ୍ଦୀ ଭାଷା ଭାଷୀମାନେ ଏମାନଙ୍କର ଜୀବନ ଯାପନ ପ୍ରଣାଳୀକୁ ପ୍ରତ୍ୟକ୍ଷ ଆଘାତ କରନ୍ତି । ସମସ୍ତ ଜାତି ନିଜର ଆତ୍ମବିକାଶ ସକାଶେ ସ୍ୱ-ସ୍ୱାର୍ଥ ସଂରକ୍ଷଣରେ ବ୍ୟସ୍ତ, ମାତ୍ର ଓଡ଼ିଆ ଜାତି ଭାବପ୍ରବଣତାର ବଶବର୍ତ୍ତୀ ହୋଇ ପଛୁଆ ହୋଇ ରହିଛି । ସମସ୍ତଙ୍କ ନିକଟରେ ସେ ଅବହେଳିତ ହୋଇ ପଡ଼ି ରହିଛି । ପ୍ରାବନ୍ଧିକ ତ୍ରିପାଠୀଙ୍କର ଏ ପାଇଁ ପ୍ରଚୁର ଅନୁଶୋଚନା ରହିଛି । ଏ ସବୁକୁ ସେ ଦୃଢ଼ ସ୍ୱରରେ ଏଇଭଳି ପ୍ରକାଶ କରିଛନ୍ତି; "ଓଡ଼ିଆ ଅନ୍ୟ ପ୍ରାନ୍ତକୁ ଗଲେ ତାକୁ କୁହାଯାଉଛି, ତୁମେ ଯୂ-ପ୍ରାନ୍ତକୁ ଯାଉଚ, ସେଇ ପ୍ରାନ୍ତର ହୋଇ ଯା ।' ସେ ବିହାରରେ ରହିଲେ ସେ ହିନ୍ଦୀ ହୋଇ ଯାଆନ୍ତୁ । ସେ ବଙ୍ଗଳାରେ ରହିଲେ ସେ ବଙ୍ଗାଳୀ ହୋଇ ଯାଆନ୍ତୁ । ହିନ୍ଦୀଭାଷୀ ଲୋକେ କି ବଙ୍ଗଳାଭାଷୀ ଲୋକେ ଓଡ଼ିଶାର ପିଠି ଉପରେ କଳ କାରଖାନା ବସାଇଛନ୍ତି । ପାଠଶାଳୀ ଖୋଲୁଛନ୍ତି ତାଙ୍କ ଓଡ଼ିଆ କୁଲିଙ୍କୁ ପାଠ ପଢ଼େଇବା ଲାଗି । ସେଠି ପଢ଼ା ହଉଚି ଏଇ ଓଡ଼ିଆ କୁଲିଙ୍କୁ ହିନ୍ଦୀ ବା ବଙ୍ଗଳା । ଯାଙ୍କୁ କୁହାଯାଉଚି ତୁମେ ଓଡ଼ିଶାକୁ ଆସିଚ ଓଡ଼ିଆ ବନିଯାଅ । ତା' କମିତି କୁହାଯିବ ? ସେମାନେ ଯେ ସବଳ ଜାତି । ଓଡ଼ିଆ ଯେତେହେଲେ କୁଲି ମଜୁରିଆ । ଓଡ଼ିଶାକୁ ଆସିଲେ ବଙ୍ଗାଳୀ ଚୈତନ୍ୟ; ସେ ଏଠି ଘରଦ୍ୱାର ମଠବାଡ଼ି କରି ରହିଗଲେ । ଆଉ ଆସିଲେ

ରାମାନୁଜ, ଶଙ୍କର, ଚୈତନ୍ୟ । ଯେ ଆସିଲେ ସେ ଏଠି ମଠବାଡ଼ି କରି ରହିଗଲେ । କିନ୍ତୁ ଓଡ଼ିଶାର ଜଗନ୍ନାଥଧର୍ମୀ ତ କେହି ଓଡ଼ିଶା ବାହାରେ ମଠବାଡ଼ି କରି ରହି ପାରିଲେନି । ଓଡ଼ିଶାରେ ବଙ୍ଗାଳୀ ଗାଁ, ହିନ୍ଦୁସ୍ଥାନୀ ଗାଁ, ତେଲେଙ୍ଗା ଗାଁ, ତାମିଲ ଗାଁ ସବୁପ୍ରକାର ଗାଁକୁ ଗାଁ ରହିଛି । କାହିଁ ହିନ୍ଦୁସ୍ଥାନ ପ୍ରାନ୍ତରେ କି ବଙ୍ଗଳାରେ କି ଆନ୍ଧ୍ରରେ ତ ଗୋଟିଏ ହେଲେ ଓଡ଼ିଆ ଗାଁ ନାହିଁ । କମିତ ହେବ, ତାଙ୍କର ମନ୍ତ୍ର ହେଲା ହାମ୍, ଆମି, ଓଡ଼ିଆର ମନ୍ତ୍ର ହେଲା ଆ-ମ-ବ ।" (ଡଗର-୨୩/୮-ପୃ ୯) ପ୍ରାବନ୍ଧିକ ଓଡ଼ିଆ ଜାତିର ଅନୁନ୍ନତ ଅବସ୍ଥା ପାଇଁ ତା'ର ସ୍ୱଭାବକୁ ଦାୟୀ କରିଛନ୍ତି । ପ୍ରାବନ୍ଧିକଙ୍କ ମତରେ ଆମ ଜାତିକୁ କବର ଦେଇ ଅନ୍ୟମାନେ ସେମାନଙ୍କ ଆଧ୍ୟାତ୍ମିକ, ଭୌତିକ ଓ ନୈତିକ ବିକାଶ କରିଛନ୍ତି । ଓଡ଼ିଆ ଜାତି ନୀରବରେ ଏ ସବୁକୁ ସବୁକାଳରେ ସହ୍ୟ କରି ଆସିଛି । ଓଡ଼ିଶାର ଉନ୍ନତି ସକାଶେ ପ୍ରାବନ୍ଧିକ ଓଡ଼ିଆ ଜାତିକୁ 'ଆମ୍ବ' ପ୍ରବନ୍ଧରେ ଯଥେଷ୍ଟ ଉଦ୍‌ବୋଧନ ଦେଇଛନ୍ତି । ନିଜର ଆତ୍ମବିକାଶ ପାଇଁ ଏ ଜାତି ସ୍ୱ-ସ୍ୱାର୍ଥ ସଂରକ୍ଷଣ ଦକ୍ଷତା ସାଂପ୍ରତିକ ପରିସ୍ଥିତିରେ ଅପରିହାର୍ଯ୍ୟ । ଏ ପ୍ରସଙ୍ଗରେ ସେ ବିଳାତ ଜାତିର କଥା କହିଛନ୍ତି । ସେ ଲେଖିଛନ୍ତି; "ଦେଖ ଏଇ ବିଲାତ ଦେଶର କଥା । ସେ ଆମ୍ବକୁ କହନ୍ତି Mango, ମାଙ୍ଗୋ, ମ୍ୟାନ ଗୋ । ସ୍ୱାରେ ଦେଖ, ଯା ପଳା । ଏହିକୁ ଦେଶକୁ ତୁମେ ଯେବେ ଯିବ, ସେ କହିବେ ଦୂର ପଳା, ଦୂର ପଳା ।" (ଡଗର—୨୩/୮-ପୃ ୯) ଦେଶପ୍ରେମୀଭାବରେ ପ୍ରାବନ୍ଧିକ ତ୍ରିପାଠୀ ଏ ଜାତିକୁ ଆଶାର ଆହ୍ୱାନ ଶୁଣାଇଛନ୍ତି । ଓଡ଼ିଆଜାତିର ନିର୍ବୋଧତାକୁ ସେ ପ୍ରଚଣ୍ଡ ବିଦ୍ରୂପ କରିଛନ୍ତି । 'ଆମ୍ବ' ପ୍ରବନ୍ଧର ପ୍ରାବନ୍ଧିକ ଯୁଗ ଯୁଗର ନିର୍ଯ୍ୟାତିତ ଓଡ଼ିଆ ଜାତିକୁ ଆତ୍ମସମୀକ୍ଷା କରିବାକୁ ଆହ୍ୱାନ ଜଣାଇଛନ୍ତି ।

ପ୍ରାବନ୍ଧିକ 'ବୋମା', 'ଛେନାଗୁଡ଼', 'ଆକାଶ କଇଁଆ', 'ଅନ୍ଧାବେପାର' ପ୍ରଭୃତି ପ୍ରବନ୍ଧରେ ପରମ୍ପରା ଓ ଐତିହ୍ୟସଚେତନ ମନେହୁଅନ୍ତି । ଏ ଜାତିର କୀର୍ତ୍ତିଭାସ୍ୱର ଆଲେଖ୍ୟ, ପୌରୁଷ ଭାବନା, ଅନୁପମ ଶାଉକ୍ତିକୁ ତାଙ୍କ ପ୍ରବନ୍ଧର ସ୍ତରେ ସ୍ତରେ ବର୍ଣ୍ଣନା କରିଛନ୍ତି । ଇତିହାସର ସ୍ମୃତି ରୋମନ୍ଥନ କରି ଏ ଜାତିକୁ ପୁଣି ସେଇପରି କର୍ମଠ ହେବାକୁ ବାରମ୍ବାର ଆଶ୍ୱାସନ ଶୁଣାଇଛନ୍ତି । ଓଡ଼ିଆ ଜୀବନରେ ନୂତନ ଆଶା ଓ ପୁଲକ ସଞ୍ଚାର ପାଇଁ ତାଙ୍କର ଦିଗ୍‌ଦର୍ଶନ ଏ ପ୍ରବନ୍ଧ-ମାନଙ୍କରେ ସତତ୍ତର ପରିଲକ୍ଷିତ ।

ପ୍ରାବନ୍ଧିକ ତ୍ରିପାଠୀ ଆନ୍ତର୍ଜାତିକ ଜୀବନର ଅସ୍ଥିରତା, ସ୍ତ୍ରୀପୁରୁଷ ଯୌନତତ୍ତ୍ୱ, ନିଃସଙ୍ଗ ଜୀବନ୍‌ବୋଧ ପ୍ରଭୃତିକୁ ଭାରତୀୟ ଦୃଷ୍ଟିକୋଣରୁ ବିଶ୍ଳେଷଣ କରିଛନ୍ତି । ତାଙ୍କର ଆଧୁନିକ ସଭ୍ୟତା ବିଷୟକ ଆନ୍ତର୍ଜାତୀୟ ଚିନ୍ତାଚେତନା

ଦ୍ୟୋତକ ମନସ୍ତ୍ୱ ପ୍ରବନ୍ଧଗୁଡ଼ିକ ମଧ୍ୟରେ 'କଙ୍କାରୁ ଫୁଲ', 'ସାବଧାନ ଭାଇ ସାବଧାନ', 'ଶ୍ରେଷ୍ଠ କଥାଟିଏ', 'କଂସାଙ୍କ ଘର ପାଖ' ପ୍ରଭୃତି ପ୍ରଧାନ । 'କଙ୍କାରୁ ଫୁଲ' ପ୍ରବନ୍ଧରେ ସେ ଫ୍ରଏଡ଼ୀୟ ଯୌନଚେତନାକୁ କଠୋର ସମାଲୋଚନା କରିଛନ୍ତି । ଫ୍ରଏଡ଼ ଯେପରି ମାତା-ପୁତ୍ର, ପିତା-କନ୍ୟା ମଧ୍ୟରେ ସ୍ନେହ ଅପେକ୍ଷା ଅଧିକ ଯୌନ ଲାଳସାକୁ ଦେଖିଛନ୍ତି, ପ୍ରାବନ୍ଧିକ ସେ ତତ୍ତ୍ୱକୁ ତାଙ୍କର ବିକାରଗ୍ରସ୍ତ ମନର ଯଥାର୍ଥ ପରିଚୟସୂଚକ ରୂପେ ଗ୍ରହଣ କରିଛନ୍ତି । ସେ ଫ୍ରଏଡ଼ଙ୍କ ମନୋ-ବିଶ୍ଳେଷଣକୁ ବିଦ୍ରୂପ କରି ଲେଖିଛନ୍ତି; "ତୁମର ମନସ୍ତତ୍ତ୍ୱ ଦରକାର ନାହିଁ, ତୁମର ଦରକାର ମନୋବିଶ୍ଳେଷଣ, ମାନେ ମନର କଥାଟା ଘାଣ୍ଟି ଘୂଣ୍ଟି ଚକଟା ଚକଟି କରି ତୁମ ଆଗରେ ଖିନଭିନ୍ କରି ଥୋଇଲେ, ତୁମେ ସେଥିରୁ ଆନନ୍ଦ ପାଇବ । ତୁମେ ଚାହିଁ ମାତୃଧନ୍ଦା, ପିତୃ ଧନ୍ଦା, ସ୍ୱସା ଧନ୍ଦା, Mother Complex, Father Complex, Sister Complex, ମା'ର ପୁଅ ପ୍ରତି ଯେ ଅଗାଧ ଅକୃତ୍ରିମ ସ୍ନେହ ତା' ଭିତରେ ତୁମେ ଦେଖିବାକୁ ଚାହିଁ, ମା' ଙ୍କର ପୁଅ ପ୍ରତି ଯୌନ ଭାବ, ବାପର ଝିଅ ପ୍ରତି ଯେ ସ୍ନେହ ଓ ଆଦର ତା' ଭିତରେ ତୁମେ ଦେଖିବାକୁ ଚାହିଁ ବାପର ଝିଅ ପ୍ରତି ଯୌନ ଭାବ ? କି କଦର୍ଯ୍ୟ !! ଅଉ ଏଇଟା କି ସତରେ ?" ପ୍ରାବନ୍ଧିକ ତ୍ରିପାଠୀ ପାଶ୍ଚାତ୍ୟ ଜଗତର ମନୋ-ବୈଜ୍ଞାନିକ ଭାବଧାରାକୁ ସୌନ୍ଦର୍ଯ୍ୟଜ୍ଞାନବର୍ଜିତ ନାରକୀୟ ଚିନ୍ତା ରୂପେ ଅଭିହିତ କରିଛନ୍ତି । 'ସାବଧାନ ଭାଇ ସାବଧାନ' ପ୍ରବନ୍ଧରେ ଆଧୁନିକ ବୈଷୟିକ ସଭ୍ୟତାର ବିକାଶରେ ଆଧୁନିକ ଜୀବନ ବିପର୍ଯ୍ୟସ୍ତ ହୋଇପଡ଼ିଥିବା ଘଟଣାକୁ ପ୍ରାବନ୍ଧିକ ସଫଳ ରୂପେ ବର୍ଣ୍ଣନା କରିଛନ୍ତି । ବୈଜ୍ଞାନିକ ମାନବର ଆଧ୍ୟାତ୍ମିକ ଓ ନୈତିକ ସ୍ଖଳନ ପ୍ରତି ସେ ସଚେତନ ହୋଇଛନ୍ତି । ତାଙ୍କ ମତରେ ଆଧ୍ୟାତ୍ମିକ ଶକ୍ତି ପୃଥିବୀରେ ସବୁ ଶକ୍ତି ଅପେକ୍ଷା ଶ୍ରେଷ୍ଠ । ଅନ୍ତର୍ଦୃଷ୍ଟି, ଆତ୍ମବୋଧ ଓ ଆତ୍ମୋଦ୍-ବୋଧନ ଦ୍ୱାରା ମାନବର ଆଧ୍ୟାତ୍ମିକ ବିବର୍ତ୍ତନ ସମ୍ଭବ । ପ୍ରାବନ୍ଧିକ ଅତୀତ ଭାରତର ଏଇ ଆଦର୍ଶକୁ ଉଚ୍ଛ୍ୱସିତ ପ୍ରଶଂସା କରିଛନ୍ତି । ନବଯୁବକମାନେ ବିଜ୍ଞାନ ଅପେକ୍ଷା ଆଧ୍ୟାତ୍ମିକ ଶକ୍ତିକୁ ଅଧିକ ଗୁରୁତ୍ୱ ଦେବାର ଆବଶ୍ୟକତା ରହିଛି । କାରଣ, ଅତୀତରେ ସେ କାଳରେ, ସରହଟି ଯୁଗରେ ଯେ ଶକ୍ତିର ବିକାଶ ଓ ପ୍ରକାଶ ହୋଇଥିଲା, ସେ କି ନଷ୍ଟ ହୋଇନି । ସେ ବର୍ତ୍ତମାନ ମଧ୍ୟ ସସାଗରେ ବିବର୍ତ୍ତିତ ହୋଇ ଚାଲିଛି । ତୁମେ ତାକୁ ଅପମାନ କଲେ, ଅବହେଳା କଲେ, ତା'ର ପ୍ରଚଣ୍ଡ ଆଘାତରେ ଚୂର୍ଣ୍ଣମାର ହୋଇଯିବଟି 'ସାବଧାନ ଭାଇ ସାବଧନ' । (ଡଗର-୧୭/୨-ପୃଷ୍ଠା-୭୨) 'ଶ୍ରେଷ୍ଠ କଥାଟିଏ' ପ୍ରବନ୍ଧରେ ପ୍ରାବନ୍ଧିକ ପ୍ରାଚ୍ୟ ସାହିତ୍ୟର ଚିନ୍ତାଧାରା ଓ ପାଶ୍ଚାତ୍ୟ ସାହିତ୍ୟର ଆଦର୍ଶର ଏକ ତୁଳନାତ୍ମକ ବିଶ୍ଳେଷଣ କରିଛନ୍ତି । ସେ ସତ୍ୟ ଶିବ ସୁନ୍ଦରକୁ ପ୍ରାଚ୍ୟ ସାହିତ୍ୟର ଆଦର୍ଶ ରୂପେ ଗ୍ରହଣ

କରିଅଛନ୍ତି । ଏ ହେତୁ ପ୍ରାଚ୍ୟ ସାହିତ୍ୟ ଆଶାବାଦୀ ଓ ମିଳନାନ୍ତକ । ମାତ୍ର ପାଶ୍ଚାତ୍ୟ ସାହିତ୍ୟ ସତ୍ୟ, ସୁନ୍ଦରର ପ୍ରଖ୍ୟାପକ । ସେଠାରେ 'ଶିବ' ଭାବର ବିକାଶ ଘଟି ନାହିଁ । ଏ ସକାଶେ ଅଧିକାଂଶ ପାଶ୍ଚାତ୍ୟ ସାହିତ୍ୟ ଦୁଃଖବାଦୀ ଓ ବିୟୋଗାନ୍ତକ । ଏ ପ୍ରକାର ସାହିତ୍ୟ ମାନବର ବିକାଶରେ ସହାୟକ ନୁହେଁ । ଭାରତୀୟ ଆର୍ଯ୍ୟ ଋଷି କଣ୍ଠର ସାହିତ୍ୟକୁ ସେ ପ୍ରକୃତ ମାନବ ଧର୍ମୀ ସାହିତ୍ୟ ରୂପେ ଦୃଢ଼ ସ୍ୱରରେ ସ୍ୱୀକାର କରିଅଛନ୍ତି ।

ପ୍ରାବନ୍ଧିକଙ୍କ 'କଂସାଶ ଘର ପାର୍'ରେ ଆନ୍ତର୍ଜାତିକ ସମସ୍ୟା ଯଥାର୍ଥ ରୂପ ନେଇଛି । ସେ ଭାରତର ବୈଦେଶିକ ନୀତି ସମ୍ପର୍କରେ ସାଧାରଣ ଭାବରେ ଆଲୋଚନା କରିଛନ୍ତି । ସେ ଭାରତକୁ ଆମେରିକା ଓ ରୁଷ୍‌ର ସାହାଯ୍ୟ ସହାନୁଭୂତିକୁ ପସନ୍ଦ କରିପାରି ନାହାନ୍ତି । ସେ ନେହେରୁଙ୍କ କେନେଡ଼ିପ୍ରୀତି ଓ କ୍ରୁଶ୍ଚେଭ୍ ପ୍ରୀତିକୁ ବ୍ୟଙ୍ଗ କରିଛନ୍ତି । ଭାରତ ସବୁଠାରୁ ଶକ୍ତିମାନ—ଏ ବିଶ୍ୱାସ ପ୍ରାବନ୍ଧିକଙ୍କର ଥିଲା । ସେ କୌଣସି ଶକ୍ତି ଭାରତ ଭୂମିରେ ଗୁରୁତ୍ୱ ଦେଇନାହାନ୍ତି । କାରଣ ଭାରତ ହେଉଛି 'କଂସାଶ ଘର ପାର୍' । ସେ କାହାରି ଧମକରେ ବିଚଳିତ ନୁହେଁ, କିମ୍ବା କାହାରି ଅନୁଗ୍ରହରେ ଆହ୍ଲାଦିତ ନୁହେଁ । ସେ ନିଜର ଆଧ୍ୟାତ୍ମିକ ଶକ୍ତିରେ ଗରୀୟାନ୍ ।

ପ୍ରାବନ୍ଧିକ ତ୍ରିପାଠୀ ତାଙ୍କର ପ୍ରତ୍ୟେକଟି ପ୍ରବନ୍ଧରେ ଜାତି, ପରମ୍ପରା, ଇତିହାସ, ସଭ୍ୟତା, ସଂସ୍କୃତି ବିଷୟରେ ପାଠକଙ୍କୁ ସଚେତନ କରାଇଛନ୍ତି । ଆଧୁନିକ ସଭ୍ୟତାରେ ଦିଗ୍‌ଭ୍ରାନ୍ତ ମଣିଷକୁ ଏହିସବୁ ପ୍ରବନ୍ଧ ପ୍ରକୃତ ପଥ ପ୍ରଦର୍ଶନ କରିପାରିବ । ତାଙ୍କର ପ୍ରବନ୍ଧରେ ସ୍ୱାଧୀନଚେତା ମଣିଷର ନିର୍ଭୀକ ମତପ୍ରଣୀ ବାଣୀ ଅନୁରଣିତ । ଜୀବନରେ ଗଭୀର ଅନୁଭୂତିକୁ ସେ ଛନ୍ଦେ ଛନ୍ଦେ ପ୍ରକାଶ କରିଛନ୍ତି । ସେ ଜାତିକୁ ପ୍ରାଣଭରି ଭଲ ପାଇଛନ୍ତି ଓ ଜାତିକୁ ଭଲ ପାଇବାର ମନୋବୃତ୍ତି ସର୍ବସାଧାରଣରେ ଜାଗ୍ରତ କରାଇବା ପାଇଁ ଚେଷ୍ଟା କରିଛନ୍ତି । ପୁରାତନ ଓ ଆଧୁନିକ ଚିନ୍ତାଧାରାର ବିଶ୍ଳେଷଣ କରି ଭାରତୀୟ ସଂସ୍କୃତିକୁ ନିଃସନ୍ଦେହରେ ଆପଣାର କରିବାକୁ ମୁକ୍ତ ହୃଦୟର ସହିତ କହିଛନ୍ତି ।

( ୩ )

ପ୍ରାବନ୍ଧିକ ତ୍ରିପାଠୀଙ୍କ ପ୍ରବନ୍ଧର ଚମତ୍କାରିତା ତାଙ୍କର ହୃଦୟସ୍ପର୍ଶୀ ରଚନା ରୀତିରେ ରହିଛି । ଫକୀରମୋହନ, ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ପରି ସରଳ ଭାଷାରେ ସାମାଜିକ ଅନ୍ତର୍ଦ୍ୱନ୍ଦ୍ୱ, ରାଜନୈତିକ ମାରପେଞ୍ଚ, ସାହିତ୍ୟିକ ବାଦାନୁବାଦ, ଆନ୍ତର୍ଜାତୀୟ ସମସ୍ୟାମାନଙ୍କୁ ନେଇ ସେ ରମ୍ୟରଚନାମାନ ସୃଷ୍ଟି କରିଛନ୍ତି । ସରଳ,

ନିରାଡ଼ମ୍ବର, ସ୍ୱଚ୍ଛନ୍ଦ, ଦେଶଜ ଭାଷାରେ ସେ ତାଙ୍କର ପ୍ରବନ୍ଧମାନଙ୍କୁ ବ୍ୟକ୍ତ କରିଛନ୍ତି। ଆବେଗମୟ ଭାଷା, ଚାପୁଡ଼ିଆ ମଧୁର ଗୁଞ୍ଜରଣରେ ତାଙ୍କର ରଚନା ପାଠକକୁ ଅଭିଭୂତ କରିଛି। ସାଧାରଣ ଭାବରେ କଥା କହିବା ସ୍ଥଳରେ ସେ ପଲ୍ଲୀଠାରୁ ଆରମ୍ଭ କରି ଦିଲ୍ଲୀ ଦରବାରର କଥା କହିଛନ୍ତି। ଜ୍ଞାନ-ବିଜ୍ଞାନର ଅବୋଧ ବିଷୟମାନଙ୍କୁ ସେ ସର୍ବସାଧାରଣଙ୍କୁ ବୁଝାଇବାର ଦୁଃସାହସିକ ପ୍ରୟାସ କରିଛନ୍ତି। ଇଂରାଜୀ ସାହିତ୍ୟରେ ପଣ୍ଡିତ ଏହି ବ୍ୟକ୍ତିଟି ତାଙ୍କର ପ୍ରବନ୍ଧଗୁଡ଼ିକରେ ଏକାବେଳେକେ ଗାଉଁଲି ଲୋକଙ୍କ ଆତ୍ମାରେ ପ୍ରବେଶ କରିଛନ୍ତି। ତାଙ୍କର ରଚନା-ଶୈଳୀରେ ଯେଉଁ ଜୀବନଶକ୍ତି ରହିଛି, ତାହା ଅନ୍ୟତ୍ର ଦୁର୍ଲ୍ଲଭ।

ଗୋବିନ୍ଦ ତ୍ରିପାଠୀ ତାଙ୍କର ପ୍ରବନ୍ଧଗୁଡ଼ିକରେ ଲୋକମୁଖର ଭାଷାକୁ ଅବିକଳ ରୂପ ଦେଇଛନ୍ତି। 'ଯୋତ୍ର', 'ଦନ୍ଦ', 'ଧଟା', 'ମୁଠି', 'ଯୁଚ', 'ହଉଚ', 'ଅକାମିକା', 'ମନ୍ଦମନ୍ଦ', 'ଥରୁଟିଏ', 'ହସୁଥାଉ', 'ଅସନା', 'ନୁଙ୍ଗୁରା', 'ଲାଗଉ ଲାଗଉ', 'ବାଙ୍ଗେଇ', 'ଚୈନ', 'ଦଉଚ', 'କୁଠେଇ'—ଏହିପରି ଶବ୍ଦାଧିକ ଜନମୁଖର ଜୀବନ୍ତ ଭାଷାକୁ ସେ ତାଙ୍କର ସୃଷ୍ଟିରେ ଫୁଟେଇ ଦେଇଛନ୍ତି। ତଦ୍ଭବ ଶବ୍ଦ ସହିତ ଏ ସବୁ ଗାଉଁଲି ଶବ୍ଦର ପ୍ରୟୋଗ ବ୍ୟାକରଣ ଦୃଷ୍ଟିରୁ ଗୁରୁଚଣ୍ଡାଳ ଦୋଷଦୁଷ୍ଟ ହେଲେ ମଧ୍ୟ ଭାବଦ୍ୟୋତକ। ମନର ଭାବକୁ ଅବିକୃତ ରୂପ ଦେବା ସକାଶେ ତାଙ୍କର ଏସବୁ ଶବ୍ଦ ପ୍ରକାଶରେ କୁଣ୍ଠା ନଥିଲା। ସେ ସାହିତ୍ୟରେ ବ୍ୟାକରଣ ନିୟମ ଅପେକ୍ଷା ଭାବ ସୌନ୍ଦର୍ଯ୍ୟ ପ୍ରତି ଅଧିକ ସଚେତନ। କେଉଁଠି ବାକ୍ୟ ତାଙ୍କର ସାଧାରଣ ଭାଷାରେ ପ୍ରକାଶ ପାଇଛି ତ, ପୁଣି କେଉଁଠି ସାହିତ୍ୟିକ ଶବ୍ଦ ଗ୍ରନ୍ଥନରେ ଗୁରୁଗମ୍ଭୀର ହୋଇଛି। ଯେପରି: "ତୁମେ ମାନ ବା ନ ମାନ, ନିରପେକ୍ଷ ଲୋକ ଏସବୁ କଥା ବିଚାର କଲେ ନିଶ୍ଚୟ କହିବ—ତୁମେ ପ୍ରକୃତି, ପ୍ରବୃତ୍ତି, ସ୍ୱାଦ, ମତି, ଭାବନା, ଚିନ୍ତା କୌଣସିଥିରେ ପଶୁପକ୍ଷୀଙ୍କ ଠାରୁ ଉତ୍କୃଷ୍ଟ ନୁହଁ। * * ଏଥିପାଇଁ କି ଯେ ତୁମେ ଭଗବାନଙ୍କୁ ବଦନାମ କରୁଚ, ପ୍ରକୃତିର ନିୟମକୁ ଭାଙ୍ଗି ଗୋଟିଏ ଉପହାସରେ ପରିଣତ କରୁଚ, ଫଳ ହେଉଛି ଗୋଟିଏ ପ୍ରକାଣ୍ଡ ବ୍ୟାମୋହ, ଗୋଟାଏ ବିରାଟ ବାମ୍ପର ଆଚ୍ଛାଦନ। (ଡଗର—୨୭/୨—ପୃ ୩୦୧)

ଗୋବିନ୍ଦ ତ୍ରିପାଠୀଙ୍କ ପ୍ରବନ୍ଧଗୁଡ଼ିକ ଆତ୍ମଧ୍ୟାନମୂଳକ। ଅନୁଭୂତିବହୁଳ ଜୀବନର ବର୍ଣ୍ଣମୟ ରୂପ ଆବେଗମୟ ଭାଷାରେ ଆତ୍ମନିବେଦନାତ୍ମକ ଭଙ୍ଗୀରେ ପ୍ରକାଶିତ। ଅନେକ ସ୍ଥଳରେ ଏସବୁ ଗୀତିକବିତା ପରି ହୃଦୟରୁ ସ୍ୱତଃ ଝରି ଆସୁଛି। ସେ ସବୁର ସ୍ୱରୂପ ଏହିପରି; "ତୁମେ ବିଶ୍ୱାସ କରିବନି, ବିଶ୍ୱାସ କରିବାର ପ୍ରକୃତିରେ। ବୈଜ୍ଞାନିକ ମତରୁ ନୁହେଁ—କିଏ ଏତେ କଷ୍ଟକୁ ଯାଉଛି? ଭାସି ଗଲି ଭାସିଗଲି। ଗୋଟାଏ କୁଠେଇଁ ହେଲେ ତ ଲାଗିବ।" ଏସବୁ ଗଦ୍ୟରେ କବିତାର ମନେହୁଏ।

ପ୍ରାବନ୍ଧିକ ତ୍ରିପାଠୀ ତାଙ୍କର ପ୍ରବନ୍ଧମାନଙ୍କୁ ସରସ ଓ ମାଧୁର୍ଯ୍ୟପୂର୍ଣ୍ଣ କରିବା ପାଇଁ ବିରୋଧାଭାଷ (Antithesis), ବ୍ୟଙ୍ଗୋକ୍ତି (Irony), ପ୍ରଭୃତି ଆଲଙ୍କାରିକ ପ୍ରୟୋଗ କରିଛନ୍ତି । ଚିନ୍ତାଧର୍ମୀ ପ୍ରକାଶ ମଧ୍ୟ ତାଙ୍କ ପ୍ରବନ୍ଧଗୁଡ଼ିକୁ ସୁଷମାସମନ୍ୱିତ କରିଛି । ତାଙ୍କର ପ୍ରତ୍ୟେକ ପ୍ରବନ୍ଧରେ ଏସବୁର ପ୍ରଚୁର ଦୃଷ୍ଟାନ୍ତ ରହିଛି । "ମଣିଷ-ଗୁଡ଼ାକ ଦେବତା ପାଲଟିଗଲେଣି, ପବନ ମୋଟା ହୋଇଗଲଣି, ପାଣି ସରବତ ବନିଗଲଣି, ମାଟି ସୁନା ବନିଗଲଣି, ପଶୁ ମଣିଷ ପାଲଟିଗଲେଣି, ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ନକ୍ଷତ୍ର, ଏସବୁ କ'ଣ ହୋଇଗଲେ କେଜାଣି ସୂର୍ଯ୍ୟ କିରଣରେ ଆଉ ତାତି ନାହିଁ, କି ଚନ୍ଦ୍ର କିରଣରେ ଆଉ ଶୀତଳତା ନାହିଁ ।" ( ଝଙ୍କାର—୧୧/୮—ପୃ ୬୭୦ )

ଗୋବିନ୍ଦ ତ୍ରିପାଠୀଙ୍କ ରଚନାରେ କବିତାର ପ୍ରାଣ, ଗଳ୍ପର ରଞ୍ଜକତା ଓ ସ୍ୱଚ୍ଛତା, ଶାଣିତ ଭାବନାର କ୍ଷୋଭ, ନାଟକୀୟ ଛଟା ରହିଛି । ଗଭୀର ଆତ୍ମ-ପ୍ରତ୍ୟୟର ସହିତ ସେ ତାଙ୍କର ବକ୍ତବ୍ୟକୁ ପ୍ରକାଶ କରିଛନ୍ତି । ପାଠକର ମନ ଛୁଇଁବା ଭଳି ପ୍ରସଙ୍ଗକୁ ସେ ଏଥିରେ ସଂଯୋଜିତ କରିଛନ୍ତି । ବ୍ୟାକରଣ ନିୟମ ଲଙ୍ଘନ କରି ସେ ଆତ୍ମୀୟତାର ସହିତ ତାଙ୍କ ପ୍ରବନ୍ଧଗୁଡ଼ିକୁ ସାବଲୀଳ ଭାବରେ ପାଠକ ନିକଟରେ ଉପସ୍ଥାପିତ କରିଛନ୍ତି । ନିଖୁଣ ରୂପରେ ପ୍ରାବନ୍ଧିକଙ୍କ ବ୍ୟକ୍ତିଗତ ସ୍ୱର ଏ ସବୁରେ ଅନୁରଣିତ ।

ପ୍ରାବନ୍ଧିକ ତ୍ରିପାଠୀ ତାଙ୍କର ପ୍ରବନ୍ଧମାନଙ୍କରେ ଜାତୀୟ ସଂସ୍କୃତିକୁ ସବୁ କ୍ଷେତ୍ରରେ ଗୁରୁତ୍ୱ ଦେଇଛନ୍ତି । ସଫଳ ପ୍ରାବନ୍ଧିକ ବ୍ୟକ୍ତିଗତ ଦର୍ଶନକୁ ପ୍ରବନ୍ଧ ମାଧ୍ୟମରେ ରୂପ ଦିଏ । ଗୋବିନ୍ଦ ତ୍ରିପାଠୀ ଜାତୀୟ ଆଦର୍ଶ ଓ ପରମ୍ପରାର ପୋଷକ-ରୂପେ ତାଙ୍କର ପ୍ରବନ୍ଧମାନଙ୍କରେ ଉଭା ହୋଇଛନ୍ତି । ସେ ନିର୍ଭୀକ ଭାବରେ ଜାତୀୟ ଜୀବନର ଅଶ୍ରୁ-ପୁଲକ, କୃତିତ୍ୱ-ବ୍ୟର୍ଥତାକୁ ବାସ୍ତବ ଦୃଷ୍ଟିକୋଣରୁ ଦେଖିଛନ୍ତି । ଜାତୀୟ ଜୀବନର ସ୍ୱପ୍ନ ସନ୍ଦେଶକୁ ପ୍ରକାଶ କରିବାରେ କେବେହେଲେ ତାଙ୍କର କାର୍ପଣ୍ୟ ନଥିଲା । ତାଙ୍କର ପ୍ରବନ୍ଧଗୁଡ଼ିକ ଜାତୀୟ ଜୀବନର ମର୍ମୋଦ୍ଘାଟନ କରିଛି । ସେ ସାହିତ୍ୟ ମଧ୍ୟରେ ଜାତିନିର୍ମାଣର ସୁଦୂର ସ୍ୱପ୍ନ ଦେଖିଛନ୍ତି । ସେ ଜାତିର ଆତ୍ମଗୌରବ ଗାନରେ ଦୁଃଖ କଷ୍ଟକୁ ଭୁଲି ଯାଇଛନ୍ତି । ପ୍ରାବନ୍ଧିକ ତ୍ରିପାଠୀଙ୍କୁ ଏହେତୁ ଜାତୀୟ ଆଦର୍ଶ ଓ ପରମ୍ପରାର ପ୍ରବକ୍ତା ରୂପେ ଗୌରବ ପ୍ରଦାନ କରାଯାଇପାରେ ।

—※—

# ଜୀବନ ଓ ଜଗତର ଅନ୍ତରଙ୍ଗ ଶିଳ୍ପୀ : କଥାକାର କିଶୋରୀ ଚରଣ

କିଶୋରୀ ଚରଣଙ୍କ ଗଳ୍ପଗୁଡ଼ିକରେ ଜାଗତିକ ଜୀବନ ପ୍ରତି ଦରଦ ସର୍ବଥା ସ୍ପନ୍ଦିତ । ତାଙ୍କର ଜୀବନପ୍ରୀତି ଅପୂର୍ବ । ଏକାନ୍ତ ନିବିଡ଼ ଭାବେ ଜୀବନକୁ ଅନୁଭବ କରିବାରେ ତାଙ୍କର ଅସୀମ ଆଗ୍ରହ । ଚିର ରହସ୍ୟମୟ ଜଗତ ଓ ସଂସାରର ଶ୍ରେଷ୍ଠ ଜୀବ ମଣିଷକୁ ସେ ଅନ୍ତରର ସହିତ ଶ୍ରଦ୍ଧା କରିଛନ୍ତି । ଏ ସଂସାରର ଅଶ୍ରୁ-ପୁଲକ ଭିତରେ ଜୀବନର ସତ୍ତା ସନ୍ଧାନ କରିବାରେ ତାଙ୍କର ଅହେତୁକ ଆନନ୍ଦ । ଆଧୁନିକ ମଣିଷର ଜଞ୍ଜାଳଗ୍ରସ୍ତ ଜୀବନ, ବହୁବିଧ ସମସ୍ୟା, ଅନିବାର୍ଯ୍ୟ ଅସହାୟତା ଓ ଜଟିଳ ଜୀବନର ଅନ୍ତଃବାସ୍ତବତାକୁ ବିଶ୍ଳେଷଣ କରିବାରେ ତାଙ୍କର କୃତିତ୍ୱ ଅବିସମ୍ବାଦିତ । ଜୀବନର ଗଭୀରତାକୁ ମାପିବାରେ ସେ ଜଣେ ନିପୁଣ ଶିଳ୍ପୀ । ଜୀବନ ସମ୍ପର୍କିତ ସତ୍ୟକୁ ନିଷ୍ଠାପର ଭାବରେ ପ୍ରକାଶ କରିବାକୁ ଯାଇ ସେ ଆଧୁନିକ ମଣିଷର ଚେତନାର ପ୍ରତ୍ୟେକ ସ୍ତରରେ ପହଞ୍ଚିବାକୁ ଚେଷ୍ଟା କରିଛନ୍ତି । ମନେହୁଏ, ସତେ ଯେପରି ଅନ୍ତଃଜୀବନର ରହସ୍ୟ ସନ୍ଧାନରେ ପ୍ରମତ୍ତ ଏଇ ଶିଳ୍ପୀ-ଜୀବନର ଅନନ୍ତ ସାଗରରେ ଏବେ ଉବୁଟୁବୁ ହେଉଛନ୍ତି । ତଥାପି ଜୀବନାନୁସନ୍ଧାନ ତାଙ୍କର ସରିନାହିଁ । ତାଙ୍କର ଲେଖାରୂପୀ ତରୀ, ଜୀବନରୂପୀ ଦରିଆର ତରଙ୍ଗରେ ଏଯାବତ୍ ନିର୍ବିଘ୍ନରେ ଭାସି ଚାଲିଛି ।

କିଶୋରୀ ଚରଣ ଏକାଧାରରେ ଗାଳ୍ପିକ ଓ କବି । ଗଳ୍ପ ହେଉଛି ତାଙ୍କର ସବୁଠାରୁ ପ୍ରକାଶର ପ୍ରିୟ ମାଧ୍ୟମ । କିନ୍ତୁ ସେ କବିତାରେ ନିଜକୁ ଅଧିକ ବ୍ୟକ୍ତ କରି ପାରନ୍ତି । ଜୀବନର ଅଭିଜ୍ଞତା, ଅନ୍ତଃସ୍ୱର ଓ ଅନ୍ତରଙ୍ଗ କାହାଣୀକୁ ସେ କବିତାରେ ଗାଇବାକୁ ଅଧିକ ପସନ୍ଦ କରିଛନ୍ତି । ଜୀବନକୁ ଗୀତିଧର୍ମୀ ନିବିଡ଼ତା ଭିତରେ ଅଧିକ ଭଲ ରୂପେ ଜାଣିବା ପାଇଁ ତାଙ୍କର କବିତା ଲେଖା ସଉକ କିଛି ଊଣା ନୁହେଁ । ଅବଶ୍ୟ ପରିମାଣ ଦୃଷ୍ଟିରୁ ଗଳ୍ପ ତୁଳନାରେ ତାଙ୍କର କବିତା ସଂଖ୍ୟା ଯଥେଷ୍ଟ ସ୍ୱଳ୍ପ । ପୁଣି, ତାଙ୍କର କବିତା ସଂକଳନ 'ଭିନ୍ନ କାମନା' ପାଠକ ମହଲରେ ବିଶେଷ ଜ୍ଞାତ ନୁହେଁ । ସମ୍ଭବତଃ ତାଙ୍କ ଗଳ୍ପର ବିପୁଳ

ସନ୍ତ୍ରାସ ଓ ପ୍ରଚଣ୍ଡ ଅଶାନ୍ତିରେ ଏଇ ଅଳ୍ପ କେତୋଟି କବିତା ପାଠକର ଦୃଷ୍ଟି ଅନ୍ତରାଳରେ ରହିଯିବା କିଛି ବିଚିତ୍ର ନୁହେଁ । ସେ ପ୍ରକାଶେ କଥାକାର ଭାବରେ ସେ ବିଶେଷ ସୁପରିଚିତ । ସେ ତାଙ୍କ ଗଳ୍ପଗୁଡ଼ିକରେ ଜୀବନର ବିବିଧରୂପ ପ୍ରକାଶ କରିଛନ୍ତି । କେତେଗୁଡ଼ିଏ ଗଳ୍ପ ମଧ୍ୟବିତ୍ତ ଜୀବନର ଯାବତୀୟ ସମସ୍ୟାରେ ଭରି-ଛନ୍ତି । ଏଥିରେ ଗାଳ୍ପିକଙ୍କ ବହିଃଦୃଷ୍ଟି ଯେପରି ସୁଦୂରପ୍ରସାରୀ, ଅନ୍ତଃଦୃଷ୍ଟି ସେହିପରି ଗଭୀରରୁ ଗଭୀରତର । ଏଥିରେ ମଣିଷର ସାମାଜିକ ସମ୍ପର୍କ, ଆଦାନ-ପ୍ରଦାନ, ସାହସ ତଥା ସାଲିସ୍‌ର ଚିତ୍ର ଉପଲବ୍ଧ । ଆଉ କେତେକ ଗଳ୍ପ ନିଃସଙ୍ଗ ମଣିଷର ଅନ୍ତର୍ଜ୍ୱାଳା ମନ୍ତ୍ରଣା ଓ ଅନ୍ତର୍ମୁଖୀ ଭାବନାକୁ ପରିସ୍ଫୁଟ କରିବାରେ ମୁଖର । ଏ ଧରଣର ଗଳ୍ପଗୁଡ଼ିକରେ ଏକାକୀ ମଣିଷଟି ଜୀବନର ଆତ୍ମନେପଦୀ ଗାଇ ବୁଲିବାରେ ବ୍ୟସ୍ତ । କ୍ଷୁଦ୍ର ମଧ୍ୟରେ ଅନନ୍ତର ପରିକଳ୍ପନା, ଅସୀମ ଭିତରେ ସସୀମର ଅନୁସନ୍ଧାନ ହେଉଛି ତାଙ୍କ ଗଳ୍ପର ବିସ୍ତୀର୍ଣ୍ଣ ପୃଷ୍ଠଭୂମି । ମଧ୍ୟବିତ୍ତ, ଉଚ୍ଚ-ମଧ୍ୟବିତ୍ତ ଶ୍ରେଣୀରୁ ଚରିତ୍ରମାନଙ୍କୁ ନେଇ ସେମାନଙ୍କ ଅନ୍ତରର ଅକୁହା କଥା, ଜୀବନର ଇତିବୃତ୍ତ, ବାସ୍ତବତା ଓ ସାମାଜିକ ଚଳଣିର ଯାବତୀୟ ହୀନମନ୍ୟଭାବକୁ ରୂପ ଦେବାରେ ତାଙ୍କର ଶିଳ୍ପୀସୁଲଭ ବ୍ୟକ୍ତିତ୍ୱ ସହଜରେ ବାରିହୋଇ ପଡ଼େ । ଭଗବାନ, ଧର୍ମ, ରାଜନୀତି, ଅର୍ଥନୀତି, ଆତ୍ମୋନ୍ନତି, ସେକ୍ସ, ଜନ୍ମ, ମରଣ ଇତ୍ୟାଦିର ତାଡ଼ନାରେ ସତତ ବିବ୍ରତ ମଣିଷକୁ ସେ ସମ୍ମାନର ସହିତ ତାଙ୍କ ଗଳ୍ପ ସଂସାରକୁ ବରଣ କରି ଆଣିଛନ୍ତି । ଚରିତ୍ର ଅବତାରଣାରେ ଗାଳ୍ପିକ ବ୍ୟକ୍ତିର ଜୀବନ ଉପଲବ୍ଧି ଓ ତା'ର ଜୀବନର ସତ୍ୟକୁ ଅତି ଗୁରୁତ୍ୱର ସହିତ ଦେଖିଛନ୍ତି । ଜୀବନର ମହତ୍ତ୍ୱ ସାଧନ ଲକ୍ଷ୍ୟରେ ତାଙ୍କ ଗଳ୍ପର ଚରିତ୍ରଗୁଡ଼ିକ ଏକ ନୈତିକ ଆଦର୍ଶ ପଥରେ ଅଯଥା ଧାବମାନ ହୋଇନାହାନ୍ତି କିମ୍ବା ଜୀବନକୁ ଏକ ସୀମିତ ପରିସରରେ ସେ ଦେଖିନାହାନ୍ତି । ବରଂ ଅତ୍ୟନ୍ତ ନିଷ୍ଠୁର ଭାବରେ ମଧ୍ୟବିତ୍ତ ଜୀବନର ସ୍ୱାର୍ଥପରତା, ପରଶ୍ରୀକାତରତା, ଶଠତା, ନିର୍ଲଜତା, ମତାନ୍ଧତା ପ୍ରଭୃତି ଇତର ସ୍ୱଭାବଗୁଡ଼ିକୁ ଶିଳ୍ପୀ ଯଥାର୍ଥ ଭାବରେ ଆଙ୍କିଛନ୍ତି । ମଣିଷର ବିଚିତ୍ର ପ୍ରବୃତ୍ତି ଓ ରୁଦ୍ର-ସୁନ୍ଦର ଜୀବନଚର୍ଯ୍ୟାକୁ ନେଇ ଏଯାବତ୍ ସେ ଶତାଧିକ ଗଳ୍ପ ରଚନା କରିଛନ୍ତି । ତାଙ୍କର 'ଭଙ୍ଗା ଖେଳନା' (୧୯୬୧), 'ଲକ୍ଷ ବିହଙ୍ଗ' (୧୯୬୮) 'ଘରବାହୁଡ଼ା' (୧୯୬୮), 'ମଣିହରା' (୧୯୭୦), 'ଠାକୁରଘର' (୧୯୭୫), 'ନାଲି ଗୁଲୁ ଗୁଲୁ ସାଧବ ବୋହୂ' (୧୯୭୮), 'ଗମନ' (୧୯୮୦), 'ଖେଳର ନାରଂଗ' (୧୯୮୨), 'ଭିନ୍ନ ପାଉଁଶ' (୧୯୮୪), 'ଶୀତ ଲହରୀ' (୧୯୮୬) ଓ 'ନିସ୍ତୋବଂଶ ମୃତ୍ୟୁ' (୧୯୮୭) ଗଳ୍ପସଂକଳନ ସମକାଳୀନ ଓଡ଼ିଆ କ୍ଷୁଦ୍ରଗଳ୍ପରେ ନୂତନତ୍ୱର ଯଥେଷ୍ଟ ଇଙ୍ଗିତ ଦେଇଛି । ଅଧିକନ୍ତୁ, ଓଡ଼ିଆ ଗଳ୍ପ ସାହିତ୍ୟର ଦିଗନ୍ତକୁ କରିଛି ପ୍ରସାରିତ । କାହାଣୀସର୍ବସ୍ୱ, ଘଟଣାବହୁଳ

ଜଗତରୁ କ୍ଷୁଦ୍ରଗଳ୍ପକୁ ସେ ନେଇଯାଇଛନ୍ତି ଅନ୍ୟ ଏକ ଉଚ୍ଚତାକୁ । ଏ ପର୍ଯ୍ୟନ୍ତ ସେ ଗଳ୍ପ ରଚନା କରି ଚାଲିଛନ୍ତି । ଯେମିତି ମନେହୁଏ, ଜୀବନଟା ତାଙ୍କର ଗଳ୍ପମୟ ।

କିଶୋରୀ ଚରଣଙ୍କ ଗଳ୍ପଗୁଡ଼ିକରେ ଅନୁଭୂତିର ପ୍ରଗାଢ଼ତା ସହିତ କଳ୍ପନାର ମଧୁର ସମନ୍ୱୟ ହୋଇଛି । ତାଙ୍କ ଗଳ୍ପଗୁଡ଼ିକ ହେଉଛି ଅନୁଭୂତିବହୁଳ ଜୀବନର ସଫଳ ଅଭିବ୍ୟକ୍ତି । ଜୀବନର ଚିରନ୍ତନତା ଓ ମାନବିକ ମୂଲ୍ୟବୋଧରେ ବିଶ୍ୱାସୀ ଶିଳ୍ପୀ ସେ । ଜୀବନର ଶାଶ୍ୱତ ଅନୁଭୂତିକୁ କଳ୍ପନାର ସ୍ପର୍ଶରେ ବଢ଼େଇ ଦେଇ ଗଳ୍ପ ସୃଷ୍ଟି କରିବାରେ ତାଙ୍କର ଦକ୍ଷତା ଅକଳନୀୟ । ଅଧିକାଂଶ ପ୍ରସିଦ୍ଧ ଗଳ୍ପ ମଧ୍ୟ ଏହିପରି ଶାଶ୍ୱତ ଜୀବନର ଏକ କାଳ୍ପନିକ ପ୍ରବାହ । ଏଥିପାଇଁ ବୋଧହୁଏ Charles Morgan କହିଛନ୍ତି, "A great story is an imaginative flux—that is all. And that in my view is everything" ( The writer and his world [1960] page-94 ) ସେ ନିଜେ ମଧ୍ୟ ଏକ ସାକ୍ଷାତକାରରେ ଲେଖକୀୟ ଅନୁଭୂତି ଓ କଳ୍ପନାବିଳାସ ସମ୍ପର୍କରେ କହନ୍ତି, "କିଛି ଅନୁଭୂତିକୁ ନେଇ ଚରିତ୍ର ମାଧ୍ୟମରେ ମୁଁ ଅଭିନୟ କରେ । ମୋ କୌଣସି ଲେଖା ପାଇଁ ଚିନ୍ତା, ଆନ୍ତରିକତା ଏବଂ ସାହସ ନଥିଲେ, ସୃଷ୍ଟି ସଫଳ ହେବନି ଏବଂ ଏହି ଆନ୍ତରିକତା ଅନ୍ତଃମଜ୍ଜାଗତ ହେବା ଉଚିତ । ମୋର ଆଖପାଖର ମଣିଷକୁ ଯେମିତି ମୁଁ ଦେଖେ, କଳ୍ପନାର ରଙ୍ଗ ଦେଇ ଆଉ ଟିକିଏ ବଢ଼ାଇ ଦିଏ । ଗୋଟିଏ ମଣିଷ ସହିତ ଆଉ ଗୋଟିଏ ମଣିଷର ଭାଗ୍ୟକୁ ଯୋଡ଼ି ତଉଲେ ଯେ, ଏଇଟି ଅନ୍ୟଟି ସହ ହୋଇଥିଲେ କିପରି ହୁଅନ୍ତା । ବର୍ଣ୍ଣନା-ଗୁଡ଼ିକୁ ନିଜସ୍ୱ ଢଙ୍ଗରେ ଖେଳେଇ ଦିଏ । ଅଶାନ୍ତିରୁ ପ୍ରଶାନ୍ତିକୁ ଉତ୍ତରଣ ହେଉଛି, ମୋର ବର୍ତ୍ତମାନର ଚେତନା ।" [ଅଧୁନା-ଅଷ୍ଟମ ବର୍ଷ-୨ୟ ସଂଖ୍ୟା-ପୃ ୧୬୩] କିଶୋରୀ ଚରଣଙ୍କ ଗଳ୍ପମାନଙ୍କରେ ଅନୁଭୂତି ବହୁଳ ଜୀବନର ବିବିଧ ରୂପ ସହିତ କଳ୍ପନାର ସବ୍ୟସ୍ପର୍ଶ ସ୍ପଷ୍ଟ । ତାଙ୍କ ଗଳ୍ପରେ ଏ ସକାଶେ ମଣିଷର ମନ ବିଶେଷ ରୂପେ ପ୍ରାଧାନ୍ୟ ବିସ୍ତାର କରିଛି । ମଣିଷକୁ ଜାଣିବା ଓ ତା' ମନର ଅସରନ୍ତି ରହସ୍ୟ ଉଦ୍‌ଘାଟନ କରିବାରେ ଗାଳ୍ପିକ ବେଶ୍ ସଚେତନ ମନେହୁଅନ୍ତି । ଏପରିକି ବେଳେବେଳେ ସେ ଅବଚେତନ ମନର ନଗ୍ନତାକୁ ନିଃସଙ୍କୋଚରେ ପ୍ରକାଶ କରିଦିଅନ୍ତି ।

କିଶୋରୀ ଚରଣଙ୍କ ଗଳ୍ପଗୁଡ଼ିକୁ ବିଚାର କରିବାକୁ ହେଲେ ପ୍ରଥମେ ତାଙ୍କର ଚରିତ୍ରଗୁଡ଼ିକୁ ଚିହ୍ନିବାକୁ ପଡ଼ିବ । ବଡ଼ ଅଦ୍ଭୁତ ଢଙ୍ଗର ତାଙ୍କ ଚରିତ୍ରଗୁଡ଼ିକ । ପ୍ରତ୍ୟେକଟି ଚରିତ୍ର ତାଙ୍କର ଅତ୍ୟନ୍ତ ରୂପେ ନିଃସଙ୍ଗ । ଏଇ ନିଃସଙ୍ଗ ମଣିଷଟିର

ମନୋରାଜ୍ୟରେ ଭାବନାର ଏକ ସ୍ୱତନ୍ତ୍ର ସଂସାର ରହିଛି । ଅନେକ ସମୟରେ ଏହି ସଂସାର ଭିତରକୁ ସାଧାରଣ ପାଠକଟିଏ ପ୍ରବେଶ କରିବାକୁ କଷ୍ଟ ଅନୁଭବ କରେ । ଅନେକତ୍ର ଗାଳ୍ପିକ ସ୍ୱୟଂ ଏକ ଚରିତ୍ର ରୂପେ ମଧ୍ୟ ତାଙ୍କ ଗଳ୍ପରେ ଉଭା ହୋଇଛନ୍ତି । ସ୍ୱାଭାବିକ ଭାବରେ ଲେଖକ ତାଙ୍କ ସୃଜନଶୀଳ ଜୀବନରେ ଯେଉଁସବୁ ଘଟଣାବଳୀର ସମ୍ମୁଖୀନ ହୋଇଛନ୍ତି, ସେ ମଧ୍ୟରୁ କେତେକ ଉଲ୍ଲେଖନୀୟ ଘଟଣାକୁ ଗଳ୍ପ ଆକାରରେ ରୂପ ଦେବାକୁ କୁଣ୍ଠାବୋଧ କରିନାହାନ୍ତି । ଯେପରି, ଚିତ୍ରକର ତା'ର ଅନୁଭୂତିକୁ ପୁଞ୍ଜି କରି ଛବିଟିଏ ଆଙ୍କେ, ଠିକ୍ ସେହିପରି ଗାଳ୍ପିକ ନିଜର ରୁଚି, ଅନୁଭୂତି, ଦେଖିବା ଜାଣିବା ବିଷୟକୁ ଆଧାର କରି ଗଳ୍ପ ଲେଖିଛନ୍ତି । ଏ ସମ୍ପର୍କରେ ସେ ସୂଚନା ଦେଇ 'ଭଙ୍ଗା ଖେଳଣା' ପୁସ୍ତକର 'ନିଜକଥା'ରେ କହିଛନ୍ତି, "ଅଧେ ଅନୁଭୂତି, ଅଧେ କଳ୍ପନା ଦେଇ ଛବି ଆଙ୍କିଛି, ଛବିର ମୂଳକଥା ହେଲା ମଣିଷ ମନର ବୈଚିତ୍ର୍ୟ । ଭଲ, ଖରାପ, ନୀତି, ଅନୀତିର ମାପକାଠି ନାହିଁ ମୋ ପାଖରେ । ଯେତେ ମାପକାଠି ଦେଖିଛି ସବୁ ମୋତେ ଲାଗୁଛି ବଙ୍କା, ଅସୁନ୍ଦର, ଅସମାନ । ତେଣୁ ନିଜର ଅନୁଭୂତି, ନିଜର ଦେଖିବା ଜାଣିବା ଭିତରେ ଯାହା ନୂଆ ଲାଗିଛି ସେଇସବୁକୁ ଲେଖିଛି । ନୀତି, ଉଦ୍ଦେଶ୍ୟର ଦାୟିତ୍ୱ ନନେଇ ଖାଲି ଛବି ଆଙ୍କିଛି । ଚେଷ୍ଟା କରିଛି ଛବିଟି ସୁନ୍ଦର ହୋଇଥିବ ଅଥଚ ପ୍ରଶ୍ନ ଯୋଗାଉଥିବ ଓ କଦାଚିତ୍ ବାସ୍ତବ ସତ୍ୟରୁ ହୁଡ଼ିନଥିବ । କାଲିଗାଈ ହୋଇଥିବ, ଦୁହାଁଳିଆ ହୋଇଥିବ ।" [ଭଙ୍ଗା ଖେଳଣା-ନିଜକଥା-ପୃ ୧ ଓ ୨] ଏହି ବକ୍ତବ୍ୟରୁ ଜଣାଯାଏ ଯେ ତାଙ୍କ ଚରିତ୍ରଗୁଡ଼ିକ ଜୀବନର ବାସ୍ତବ ଭୂମିରେ ପ୍ରତ୍ୟହ ବିଚରଣ କରନ୍ତି । ଏମାନଙ୍କର ବହିର୍ଜଗତର ଜୀବନସଂଗ୍ରାମ କିମ୍ବା କୋଳାହଳ ସହିତ ପ୍ରାୟ ସମ୍ପର୍କ ନାହିଁ । ତାଙ୍କ ଚରିତ୍ରମାନେ ରୋମାଣ୍ଟିକ ଆବେଗର ବଶବର୍ତ୍ତୀ ହୋଇ ନାହାନ୍ତି । ଜୀବନର ଅନ୍ତର୍ମୁଖୀନତାକୁ ବଡ଼ ଗୁରୁତ୍ୱ ଦେଇଛନ୍ତି ସେ । ତେଣୁ ତାଙ୍କ ଚରିତ୍ରମାନେ ବଡ଼ ଗମ୍ଭୀର ଦିଶନ୍ତି । ସେମାନେ ଭାବନ୍ତି ବହୁତ । ତାଙ୍କର ସେଇ ମଧ୍ୟବିତ୍ତ ଶ୍ରେଣୀର ଚରିତ୍ରଗୁଡ଼ିକ ଯେତେବେଳେ ପ୍ରଚଳିତ ମୂଲ୍ୟବୋଧ ସହିତ ସାମ୍ପ୍ରତିକ ପରିସ୍ଥିତିରେ ସାଲିସ୍ ନ କରି ପାରି ଦ୍ୱିଧାଗ୍ରସ୍ତ ହୁଅନ୍ତି, ସେତିକିବେଳେ ସେମାନେ କହିଦେଇଥାନ୍ତି ଜୀବନର ଅପ୍ରିୟ ସତ୍ୟ । ସେମାନେ କୌଣସି ମତବାଦର ଗଣ୍ଡିରେ ବାନ୍ଧି ନ ହୋଇ, ଗଭୀର ଭାବରେ ସାମାଜିକ ନ୍ୟାୟ ପ୍ରତି ଆସ୍ଥା ପୋଷଣ କରି ସ୍ୱାଧୀନଭାବରେ ଜୀବନର କଥା କହିଥାନ୍ତି । ଆପଣାର ମଣିଷପଣିଆକୁ ପ୍ରକାଶ କରିବାରେ ତାଙ୍କ ଗଳ୍ପର ଚରିତ୍ରଗୁଡ଼ିକ ବେଶ୍ ବିଶ୍ୱସ୍ତ ।

ଜୀବନର ବ୍ୟକ୍ତିଗତ ଅନ୍ତର୍ଦ୍ୱନ୍ଦ୍ୱ ଓ ଅଶେଷ ଦୁର୍ବଳତାକୁ ଯେପରି ବିଶିଷ୍ଟ ଶିଳ୍ପୀମାନେ ଶ୍ରଦ୍ଧାର ସହିତ ସେମାନଙ୍କ ସୃଷ୍ଟିରେ ରୂପ ଦେଇଥାନ୍ତି, ସେହିପରି କିଶୋରୀ ଚରଣଙ୍କ କେତେକ ଗଳ୍ପରେ ପ୍ରକଟିତ ହୋଇଛି ତାଙ୍କ ଜୀବନର ଅନ୍ତ-

ପୁଲକର ଅନ୍ତରଙ୍କୁଆଁ କାହାଣୀ । ଏ ଧରଣର ଗଳ୍ପମାନଙ୍କରେ ଗାଳ୍ପିକ ସ୍ୱୟଂ ଗଳ୍ପନାୟକ । ଏହିସବୁ ଆତ୍ମବିଶ୍ଳେଷଣ ଧର୍ମୀ ଗଳ୍ପମାନଙ୍କରେ ଅନୁଭୂତିର ନିବିଡ଼ତା ସହିତ ମିଶିଯାଇଛି ଗାଳ୍ପିକଙ୍କ ସମ୍ବେଦନଶୀଳ ହୃଦୟର ଉଦାରତା । ଏହି ପର୍ଯ୍ୟାୟର ଉଚ୍ଚକୋଟୀର ଗଳ୍ପଗୁଡ଼ିକରେ ତାଙ୍କର 'ବିଧର୍ମୀ', 'ଭଙ୍ଗା ଖେଳଣା', 'ଘେରାଉ', 'ନୀତି ହିପୁରି', 'ମଣିହରା'କୁ ବିଶ୍ଳେଷଣ କଲେ ଗାଳ୍ପିକଙ୍କ ସ୍ୱ-ଅନୁଭୂତିକୁ କଳାତ୍ମକ ରୂପ ପ୍ରଦାନର ଦକ୍ଷତା ସମ୍ବନ୍ଧରେ ଜାଣିହୁଏ । ଏଠାରେ ଦୃଷ୍ଟାନ୍ତ ସ୍ୱରୂପ 'ମଣିହରା' ଗଳ୍ପଟିର ବିସ୍ତୃତ ବିଶ୍ଳେଷଣ କରାଯାଉ । ଲେଖକଙ୍କ ବ୍ୟକ୍ତିଗତ ଅନୁଭୂତିର ସ୍ପର୍ଶ ଏ ଗଳ୍ପଟିକୁ ଓଡ଼ିଆ ଗଳ୍ପ ସାହିତ୍ୟରେ ଏକ ସ୍ୱତନ୍ତ୍ର ସ୍ଥାନ ଦେଇଛି । ଏକପକ୍ଷରେ ପୁତ୍ର ବିୟୋଗ ଜନିତ ଶୋକକୁ ଦୀର୍ଘକାଳ ବଞ୍ଚାଇ ରଖିବାର ବ୍ୟାକୁଳତା ଓ ଅପର ପକ୍ଷରେ ପ୍ରବୃତ୍ତି ପରିଚାଳିତ ହୋଇ ପ୍ରକୃତିର ନିୟମ ନିକଟରେ ମଣିଷର ଅସହାୟତାକୁ 'ମଣିହରା' ଗଳ୍ପରେ ସେ ଦେଖାଇଛନ୍ତି । ଏଣେ ପୁଅ ମରଣକୁ ମାଆ ସହଜରେ ଭୁଲିପାରୁନି, ଅଥଚ ଦେହଧର୍ମ ତାକୁ ଅଜାଣତରେ ସ୍ୱାମୀ ନିକଟକୁ ଟାଣି ନେଉଛି । ମନରେ ଅପାଶୋରା ସେଇ ପୁତ୍ର ବିୟୋଗର ଦୁଃଖ ଥିଲେ ସୁଦ୍ଧା, ପୁଣି ମାଆ ହୁଏ ସନ୍ତାନବତୀ ଓ ସବୁକିଛି କାର୍ଯ୍ୟ ନିୟମିତ ଭାବରେ ଚାଲେ । ଯୌନ ତାଡ଼ନା, କ୍ଷୁଧା, ଆତ୍ମରକ୍ଷା ବାସନା ଓ ସନ୍ତାନ ବାତ୍ସଲ୍ୟ—ଏଇ ଚାରୋଟି ହେଉଛି ଜୀବନରେ ଚରମ ସତ୍ୟ । ଏ ସବୁକୁ ଧରି ପ୍ରକୃତି ଆମକୁ ଯେପରି ପରିଚାଳିତ କରେ, ଆମେ ସେଇପରି ଗତିକରୁ । ସୁତରାଂ, ଆତ୍ମଜର ମୃତ୍ୟୁ ଯେତେ କରୁଣ ଶୋକାବହ ଘଟଣା ହେଲେ ବି ତା' ତୁଳନାରେ ଆପଣା ଜୀବନ ଯେ ଅଧିକ ଉପାଦେୟ, ଏଇ ଗପଟି ଆମକୁ ବାରମ୍ବାର ସୂଚାଇ ଦେଇଥାଏ । ଯେ କୌଣସି ମୃତ୍ୟୁ ଜନିତ ଶୋକକୁ ଅତିକ୍ରମ କରି ଏହାକୁ କେବଳ ସ୍ମୃତିର ସାମଗ୍ରୀ ରୂପେ ସାଇତି ରଖିବାପାଇଁ ଜୀବଧର୍ମର ସ୍ୱାଭାବିକ ପ୍ରକ୍ରିୟା ଯେ ଅନେକାଂଶରେ ସହାୟକ, ଏହାକୁ କେହି ଅସ୍ୱୀକାର କରିବେ ନାହିଁ । ପ୍ରତ୍ୟେକ ପ୍ରସିଦ୍ଧ ଲେଖକ ତା' ଲେଖାରେ ଏହିପରି ଆପଣା ଆତ୍ମାର ଅନାହତ ସ୍ୱରକୁ ପ୍ରକାଶ କରିଥାଏ । Havelock Ellis ସେ ସକାଶେ ବୋଧହୁଏ କହିଥିଲେ, "Every artist writes his own autobiography." ଯେପରି ଦର୍ପଣଟିକୁ ମଣିଷ ତା'ର ମୁଖଦର୍ଶନ ପାଇଁ ବ୍ୟବହାର କରିଥାଏ, ଠିକ୍ ସେହିପରି ଲେଖକର ଲେଖା ଭିତରେ ତା'ରି ଶୋକାକୁଳ ଆତ୍ମାର ଅନାହତ ସ୍ୱର ଶୁଣିବାକୁ ମିଳିଥାଏ । ଯେମିତି 'ମଣିହରା' ଗଳ୍ପଟି ପାଠକଲେ ସ୍ୱାଭାବିକ ଭାବରେ ଲେଖକଙ୍କ ଅଶ୍ରୁକରୁଣ ଜୀବନର ଏକ ଦୁଃଖଦ ଛବି ପାଠକର ମାନସପଟରେ ଭାସିଯାଏ । ଲେଖକଙ୍କ ଅନୁଭୂତି ବହୁଳ ଜୀବନର ଅନ୍ୟଏକ ଆତ୍ମବିଶ୍ଳେଷଣ ଧର୍ମୀ କଳାତ୍ମକ ଅଭିବ୍ୟକ୍ତି ହେଉଛି 'ଘେରାଉ' ଗଳ୍ପ । ଏଇ ଗଳ୍ପଟି ସହିତ ଲେଖକଙ୍କ ଚାକିରି ଜୀବନର

ଅନୁଭୂତ ଅଙ୍ଗାଙ୍ଗୀ ଘଟିବ କରିତ । ଏଥିରେ ଟେପରିମଟେର ପଡ଼ିଥିବା ଚରିତାବଳୀର ନାୟକ ସ୍ୱୟଂ ଗାଙ୍ଗୁଲିଙ୍କ ବ୍ୟତୀତ ଆଉ କେହି ନୁହନ୍ତି । ଆପଣାର କଳା, ସଂସ୍କୃତି ଓ ବ୍ୟକ୍ତିତ୍ୱରେ ସେ ଥିଲେ ସମସ୍ତଙ୍କର ପ୍ରିୟ ଭାଜନ । ମିଷ୍ଟର ନାୟକଙ୍କ ଏହି ବ୍ୟକ୍ତିଗତ ସମ୍ପର୍କ ସହିତ ସରକାରୀ ସମ୍ପର୍କ ସମ୍ପୂର୍ଣ୍ଣ ଅଲଗା ଥିଲା । ଅର୍ଥାତ୍, କର୍ମଚାରୀ ୟୁନିଅନ୍, ମିଷ୍ଟର ନାୟକଙ୍କୁ କ୍ଷମତାସୀନ ସ୍ୱପକ୍ଷ ଦଳର ସଦସ୍ୟ କର୍ମଚାରୀ ରୂପେ ଦେଖୁଥିଲେ । ଯେଉଁ ଅବସରରେ ସେ ତାଙ୍କ ବ୍ୟକ୍ତିତ୍ୱ ବଳରେ କର୍ମଚାରୀ ୟୁନିଅନ୍‌କୁ ଏପରି ବୁଝାଇ ଦେଉଥିଲେ, ଯାହାଫଳରେ ସମସ୍ତେ ଖୁସି ହୋଇଥିଲେ । ଏହି ଚଳିତ ସମ୍ପର୍କରେ ସେ ନିଜେ ମଧ୍ୟ ସ୍ୱୀକାର କରନ୍ତି ଯେ, "ମୁଁ ଯେତେବେଳେ ପଶ୍ଚିମବଙ୍ଗର ଆକାଉଣ୍ଟାଣ୍ଟ୍ ଜେନେରାଲ୍ ଭାବରେ କଲିକତାରେ ଥିଲି । ଆମ ଅଫିସ୍ କର୍ମଚାରୀମାନଙ୍କ ୟୁନିଅନ୍ ଗୋଟିଏ ରାଜନୈତିକ ଦଳର ସମ୍ପୂର୍ଣ୍ଣ ଅଧୀନରେ ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ସେହି ପରିପ୍ରେକ୍ଷୀରେ ତାଙ୍କ ନେତାମାନେ ମୋତେ ବ୍ୟକ୍ତିଗତ ଭାବରେ ସମ୍ମାନ ଦେଲେ ମଧ୍ୟ ସରକାରୀ ସୂତ୍ରରେ ମୋ ସାଙ୍ଗରେ ପାଟି ଫିଟାଉ ନଥିଲେ । କାରଣ ମୁଁ ଥିଲି କ୍ଷମତାସୀନ ତଥା ସ୍ୱପକ୍ଷ ଦଳର ଅନ୍ୟତମ ନୌକର ଓରଫ ଦଲାଲ ; କିନ୍ତୁ ୟୁନିଅନ୍‌ର ବାହାରେ ଯେଉଁମାନେ କଳା, ସଂସ୍କୃତି ନେଇ ମାତିଥିଲେ, ସେମାନେ ମୋ ସାଙ୍ଗରେ ଆଲାପ ନକରି ରହିପାରିଲେ ନାହିଁ । ସେହି ସମୟରେ ସେମାନଙ୍କ ପ୍ରଥମ ସାହିତ୍ୟ ପତ୍ରିକା 'ଅବସର'ର ସମ୍ପାଦନରେ ମୋତେ ମୁଖ୍ୟ ଭୂମିକା ନେବାକୁ ପଡ଼ିଥିଲା, ଓ ତା'ର ପ୍ରଥମ ସଂଖ୍ୟାରେ ଏହି 'ଯେଉଁଠି' ଗପର ବଙ୍ଗଳା ଅନୁବାଦ ପ୍ରକାଶିତ ହୋଇଥିଲା । ଫଳ କ'ଣ ହେଲା ଜାଣନ୍ତି ? ଏହାର କିଛିଦିନ ପରେ ଯେତେବେଳେ କୌଣସି ଗୋଟାଏ ବ୍ୟାପାର ନେଇ ୟୁନିଅନ୍ ଲଢ଼େଇର ଡାକରା ଦେଲା, ସେତେବେଳେ ଥୋକେ ଏହି ଗପର ନଜିର ଦେଇ କହିଲେ ଯେ, ଲଢ଼େଇ ହେଲେ ହେଉ ଦଲାଲ କର୍ତ୍ତୃପକ୍ଷଙ୍କ ସାଙ୍ଗରେ, ସେ'ଙ୍କ ସାଙ୍ଗସୂତ୍ରେ ନୁହେଁ, କାରଣ ଇଏ ତାଆଁକୁ କର୍ତ୍ତୃପକ୍ଷ—ବରଂ ମିଷ୍ଟର ନାୟକଟିଏ ।" [ତିରିଶ ବର୍ଷର ଗଳ୍ପ ଓ ଆଲାପ ( ପ୍ରଥମ ଭାଗ )—୧୯୮୮—ପୃ-୫୫୩ ] ପୁଣି ଗାଙ୍ଗୁଲିଙ୍କ 'ସ୍ୱଧର୍ମୀ' ଗଳ୍ପଟିକୁ ସ୍ୱୀକାର କଲେ ମନେହୁଏ ସେ ଜଣେ ଆଧ୍ୟାତ୍ମ ବିଶ୍ୱାସୀ ଶିଳ୍ପୀ । ବଡ଼ ଅଦ୍ଭୁତ, ଅଥଚ ପ୍ରଭାବଶାଳୀ ସେହି ସ୍ୱଧର୍ମୀର 'ମୁଁ' । ଏହି 'ମୁଁ'ର ପରିଚୟ ସ୍ୱତନ୍ତ୍ର ମାନସିକ ଭାବନା ଭିତରେ ଅନେକାଂଶରେ ପ୍ରତିଫଳିତ । ଅତ୍ୟନ୍ତ ଅନୁଦାର ଭାବରେ ଆତ୍ମସୁଖ ସାଧନ ପାଇଁ ପର ଶିଳ୍ପଟିକୁ ନିଶ୍ଚିତ ମୃତ୍ୟୁକୁ ଠେଲିଦେଇପାରେ ଏହି 'ମୁଁ' । ଗଳ୍ପଟିରେ ଗାଙ୍ଗୁଲିଙ୍କ ବ୍ୟକ୍ତିଗତ ଅନୁଭୂତି ଥାଉ କି ନଥାଉ, ଏପରି ଢଙ୍ଗରେ ଗଳ୍ପଟି କୁହାଯାଇଛି, ଯାହା ପାଠକ ନିକଟରେ କୌଣସି ସତ୍ୟ ଘଟଣା ପରି ପ୍ରତିଭାତ ହୁଏ । ସଦାପ୍ରସନ୍ନ, କରୁଣ, କୋମଳ, ସ୍ୱଳ୍ପଭାଷୀ, ଶାନ୍ତିପ୍ରିୟ

ଅଭିଗ୍ରାମ ବାବୁ ଓ ଆଦରଣୀୟା, ମାନଙ୍କ ସେଇ ଟିକଟିଏ ଇଛା ଗଳ୍ପପାଠ ସହିତ ପାଠକକୁ ବଶିଯାଏ । ଗାଲ୍ଟିକଙ୍କ ଏଇ ଗଳ୍ପଟି ଭିତରେ ବେଶ୍ ଭଲଭାବରେ ଦେଖିହୁଏ ଯେ ଅତି ଶୁଭଯୋଗରେ ଗାଲ୍ଟିକଙ୍କ ସୃଜନୀଶକ୍ତି 'ସ୍ୱଧର୍ମୀ' ପରି ଏକ ଅତୁଳନୀୟ ହିଇକୋଟିର ଗଳ୍ପକୁ ଜୀବନ୍ୟାସ ଦେଇପାରିଛି । ଏଇ ଗଳ୍ପଟିର ଆବେଦନ ଓ ଗୁରୁତ୍ୱ ସମ୍ପର୍କରେ Mathew Arnoldଙ୍କ ଉକ୍ତିଟି ଅବଶ୍ୟ ଏଠାରେ ସ୍ମରଣୀୟ, "For the creation of a master work of literature, two powers must concur, the power of the man and the power of the moment."

ଭ୍ରମଣ ଜନିତ ଅନୁଭୂତିକୁ ଗଳ୍ପରୂପ ଦେବାରେ ଗାଲ୍ଟିକଙ୍କ ସିଦ୍ଧି ଅନୁପମ । ତାଙ୍କର 'ଘରବାହୁଡ଼ା' ପୁସ୍ତକର ଗଳ୍ପଗୁଡ଼ିକ ଏଇ ଧରଣର । ବିଦେଶୀ ପୃଷ୍ଠଭୂମିରେ ଏସବୁ ଗଳ୍ପଗୁଡ଼ିକ ରଚିତ ହେଲେ ସୁଦ୍ଧା, ଜଣେ ସଂସ୍କୃତି ପ୍ରେମୀ ଭାରତୀୟ ଲେଖକର ମନନ-କଳ୍ପନା, ଆତ୍ମାନୁସନ୍ଧାନ ଏଥିରେ ବଡ଼କଥା । ଏଇ ଗଳ୍ପ ସଙ୍କଳନର 'ନିଜକଥା'ରେ ସେ ଏ ପ୍ରସଙ୍ଗରେ କହିଛନ୍ତି, "ପ୍ରଥମତଃ ପ୍ରତି ଗଳ୍ପ ବିଦେଶର ପୃଷ୍ଠଭୂମିରେ ଲେଖା ହୋଇଛି । ନିକଟରେ ମୁଁ ପ୍ରାୟ ତିନିବର୍ଷ ଯୁକ୍ତରାଷ୍ଟ୍ରର ରାଜଧାନୀ ଓ୍ୱାଶିଙ୍ଗ୍ଟନ୍‌ରେ ଥିଲି ଏବଂ ସେଠାରୁ ଦକ୍ଷିଣ ଆମେରିକାର ବିଭିନ୍ନ ଅଞ୍ଚଳକୁ ଯିବାର ସୁଯୋଗ ପାଇଥିଲି । ତାହା ପୂର୍ବରୁ ଅଳ୍ପଦିନ ପାଇଁ ଦକ୍ଷିଣ ପୂର୍ବ ଏସିଆକୁ ଯାଇଥିଲି । ଏହିସବୁ ବିଦେଶଭୂମିର ବିଚିତ୍ର ନୂତନ ପରିବେଶରେ ମୋର ଦେଶବାସୀମାନେ କେତେ ଭାବରେ ଧାବିତ, ଉନ୍ମତ୍ତ, ଉତ୍କ୍ଷିପ୍ତ ତଥା ବ୍ୟଥିତ ହୁଅନ୍ତି, କେତେ ସଂଘାତର ମୁକାବିଲା କରିବାକୁ ଯାଇ ଛଟପଟ ହୁଅନ୍ତି, ତା'ର ସାମାନ୍ୟ ଅନୁଭୂତି ମୋର ମନକୁ ଛୁଇଁଛି । ପୁଣି ଘରକୁ ଫେରିଆସି ନିଜ ଦେଶକୁ ନୂଆ ଆଖିରେ ଦେଖିବାର ବିସ୍ମୟ ଓ ବେଦନା—ତା'ର ମୂଲ୍ୟ କିଆରି । ଏହି ହେଉଛି ଗଳ୍ପଗୁଡ଼ିକର ସାଧାରଣ ଗୁଣ ।" ବିଦେଶୀ ପୃଷ୍ଠଭୂମିରେ ରଚିତ 'ଘର ବାହୁଡ଼ା' ସଙ୍କଳନର ଗଳ୍ପଗୁଡ଼ିକ ବର୍ଣ୍ଣନା ଧର୍ମୀ । ଏହି ବର୍ଣ୍ଣନା ମାଧ୍ୟମରେ ସେ ସାଧାରଣ ପାଠକକୁ ଆମେରିକାର ସୁସଭ୍ୟ ଜଗତ ସହିତ ପରିଚିତ କରାଇଛନ୍ତି । ସେଠାକାର ସମ୍ଭ୍ରାନ୍ତ ପରିବେଶ, ଚଳଣି, ସଂସ୍କୃତି ସଚେତନତା, ଆଭିଜାତ୍ୟ, ପରିଷ୍କାର-ପରିଚ୍ଛନ୍ନତା, ଋତୁଚକ୍ର, ତୁଷାରପାତ ପ୍ରଭୃତି ଯାବତୀୟ ବିଷୟ ଏଥିରେ ପୃଷ୍ଠାପରେ ପୃଷ୍ଠା ବର୍ଣ୍ଣିତ । ଏପରିକି ସେଠାକାର ଶବଦାହ ରୀତି ସମ୍ପର୍କରେ ସେ ଅନୁଧ୍ୟାନ କରିବାକୁ ଭୁଲିନାହାନ୍ତି । ମୃତ୍ୟୁର ମହାନତା ନିକଟରେ ସଭ୍ୟତାର ଗାରିମା ଯେ କେତେ ତୁଚ୍ଛାତିତୁଚ୍ଛ ଏଇ କଥା ପଦକ କହିବାପାଇଁ ବୋଧହୁଏ ସେ ଶବଦାହ ରୀତି ସମ୍ପର୍କରେ ଏପରି ବର୍ଣ୍ଣନା କରିଛନ୍ତି । ବେଳେ ବେଳେ ମଧ୍ୟ

ଆମେରିକାର ବିଚିତ୍ର-ନୂତନ ଜୀବନଚର୍ଯ୍ୟାକୁ ନିର୍ଭିକ ପରି ସୂକ୍ଷ୍ମଭାବେ ବିଶ୍ଳେଷଣ କରିବାରେ ସେ ଦେଖାଇଛନ୍ତି ତାଙ୍କର ଅସାଧାରଣ ଦକ୍ଷତା । ସେ ଆମେରିକା ପରି ଗୋଟିଏ ରୁଚିପୂର୍ଣ୍ଣ ସଭ୍ୟ ଦେଶରେ ସବୁଠୁ ଅନୁଭବ କରିଛନ୍ତି ଆଡ଼ମ୍ବରପୂର୍ଣ୍ଣ ଯନ୍ତ୍ରାକ୍ତ ଜୀବନ । ଏ ସତ୍ତ୍ୱେ ସେଠାରେ ଗୋରା-କଳା ଭେଦ କିଛି କମ୍ ନୁହେଁ । ସେଠାରେ ବିଳାସ, ପ୍ରାଚୁର୍ଯ୍ୟ ଓ ସୁଖଭୋଗ ଭିତରେ କାଳାତିପାତ କରିଥିଲେ ବି ଲେଖକଙ୍କର ଘରବାହୁଡ଼ା ପାଇଁ ସର୍ବାଧିକ ବ୍ୟଗ୍ରତା ଥିଲା । ହୋଇପାରେ, ଆମେରିକା ତାଙ୍କର ଏକ ନୂତନ ପ୍ରେୟସୀ ; କିନ୍ତୁ ପ୍ରେୟସୀ କେବଳରୁ ସିନ୍ତାନକୁ ଯେ ମା' ଫେରାଇ ଆଣିପାରେ, ଏ ହେଉଛି ଅନେକାଂଶରେ ସତ୍ୟ । ତାଙ୍କର ଆମେରିକା ରହଣିକାଳୀନ ମଧୁର ସ୍ମୃତି ସ୍ମରଣୀୟ ନିଶ୍ଚୟ; କିନ୍ତୁ ମାତୃଭୂମିର ମମତା, ଆକର୍ଷଣ ତା' ତୁଳନାରେ ଯେ ଅଧିକ, ଏଥିରେ ସନ୍ଦେହ ନାହିଁ । ତେଣୁ ସେ ଥିଲେ ଭାରତ ଭାବନାରେ ବିଭୋର । ଭାରତଭୂମି ସ୍ପର୍ଶ କରିବା ଅବସରରେ ତାଙ୍କ ଭାବନାର ଏକ ମନୋଜ୍ଞ ପରିପ୍ରକାଶ ଦେଖନ୍ତୁ, "ମୋ ଭାରତ କ'ଣ ସୁନ୍ଦର ନୁହେଁ ! ଏହି ସ୍ନିଗ୍ଧା, ଶ୍ୟାମା; ବର୍ଷାସଜଳ ଭାରତ ଭୂଇଁର କବିମାନଙ୍କ ମଧ୍ୟରେ ମୁଁ ମଧ୍ୟ ଜଣେ, ମୋତେ ଭୁଲ ବୁଝନାହିଁ । ମୋର ତା' ପ୍ରତି ପ୍ରଗାଢ଼ ମମତା ଅଛି, ତାହା ମୋର ଜନ୍ମଗତ ଅଧିକାର ।" (ଘର ବାହୁଡ଼ା) ମାଟିରୁ ଆକାଶକୁ ଯିବାରେ ଯେତିକି ଆନନ୍ଦ ଥାଏ, ପୁଣି ଆକାଶରୁ ମାଟିକୁ ଫେରିବାରେ ଯେ ତା'ଠାରୁ ଅଧିକ ଆନନ୍ଦ ରହିଛି, ଏହି ବିଶ୍ୱସ୍ମୃତି 'ଘର ବାହୁଡ଼ା' ସଙ୍କଳନର ଗଳ୍ପଗୁଡ଼ିକରୁ ସହଜରେ ବୁଝିହୁଏ । ଭ୍ରମଣ ବୃତ୍ତାନ୍ତ ପରି ମନେହେଉଥିବା ପ୍ରଥମ ପୁରୁଷରେ ରଚିତ ଏହି ଗଳ୍ପଗୁଡ଼ିକ ଓଡ଼ିଆ ଗଳ୍ପ ସାହିତ୍ୟର ପ୍ରଚଳିତ ପରମ୍ପରାକୁ ଅତିକ୍ରମ କରି ଏକ ନବପଥ ଅଭିମୁଖେ ଯାତ୍ରା କରିଛି ।

ମନୋବିଶ୍ଳେଷଣ ପୂର୍ବକ ମଣିଷମନର ଅନନ୍ତ ବୈଚିତ୍ର୍ୟ ପ୍ରକଟନରେ ତାଙ୍କର ସ୍ୱାତନ୍ତ୍ର୍ୟ ଅନସ୍ୱୀକାର୍ଯ୍ୟ । ଶିଶୁ, ପୁରୁଷ, ନାରୀ, ଅବିବାହିତା ନାରୀ, ବୃଦ୍ଧ ସର୍ବୋପରି ବୁଦ୍ଧିଜୀବୀ ମଧ୍ୟବିତ୍ତ ଜୀବନର ଜଟିଳ ମାନସିକ ଅଭିବ୍ୟକ୍ତିର ଇତିବୃତ୍ତ ରଚନା କରିବା ବ୍ୟାପାରଟି ତାଙ୍କୁ ଭଲରୂପେ ଜଣା । ମନର ସୂକ୍ଷ୍ମାତିସୂକ୍ଷ୍ମ ସ୍ତରକୁ ସେ ଯେପରି ଅତିକ୍ରମ କରିପାରନ୍ତି. ସେହିପରି ସେ ବାହ୍ୟଜଗତରେ ନିୟତ ସଂଚରଣଶୀଳ ବ୍ୟସ୍ତ ବିକ୍ଷିପ୍ତ ମନକୁ ତାଙ୍କ ସୃଷ୍ଟିରେ ବ୍ୟକ୍ତ କରିପାରନ୍ତି । ଏ ସମ୍ପର୍କରେ ସେ ନିଜେ ମଧ୍ୟ କହନ୍ତି, "ଯଦି ଜଣେ ଲେଖକ ତା'ର ମାନସ ଗୁହାର ପାଖ ନ ମାଡ଼ି ବାହାରୁ ଆସୁଥିବା ବିଭିନ୍ନ ଚେତନାର ଆଲୁଅରେ ସାହିତ୍ୟ ରଚନା କରେ, ତା'ହେଲେ ସେ ଗୋଟାଏ ଯନ୍ତ୍ର ବା ଫଟୋ କ୍ୟାମେରାରେ ପରିଣତ ହୋଇଯିବ । ଅପର ପକ୍ଷରେ ସେ ଯଦି କେବଳ ତା'ର ଗୁହାର ଜନ୍ତୁମାନଙ୍କୁ ଖୋଜି ଖୋଜି ଚିହ୍ନିବାକୁ ଚେଷ୍ଟା କରିବ, ତା'ହେଲେ ସେ କେବଳ

ଆଦ୍ଧମ ବା ବାତୁଳ ହୋଇଯିବ । ତେଣୁ ମୋ ମତରେ ଜଣେ ଗଳ୍ପ ଲେଖକ ଅନ୍ଧାର ଗୁହା ଓ ଆଲୋକିତ ଚେତନା—କୌଣସିଟିକୁ ଛାଡ଼ିଗଲେ ଚଳିବ ନାହିଁ । ତେଣୁ ତାକୁ ଏକାଧାରରେ Macroscopic ଓ Microscopic ହେବାକୁ ପଡ଼ିବ ।'' (ଗଳ୍ପ—ଅଷ୍ଟମ ଭାଗ—ଅକ୍ଟୋବର ୧୯୭୨ ଲେଖକଙ୍କ ସହ ସାକ୍ଷାତକାର ବିବରଣୀ ) ଏ ପ୍ରସଙ୍ଗରେ ଲେଖକଙ୍କ ଗଳ୍ପମାନଙ୍କ ମଧ୍ୟରୁ ବିଶେଷକରି 'ଭଙ୍ଗା ଖେଳଣା', 'ଠାକୁର ଘର', 'ସଂମାର ରୋମାନ୍ସ', 'ହସ କଥା', 'ଶୀତ ଲହରୀ' ଗଳ୍ପଗୁଡ଼ିକୁ ବିଶ୍ଳେଷଣ କରାଯାଇପାରେ । 'ଭଙ୍ଗା ଖେଳଣା' ଗଳ୍ପରେ କିଶୋରୀ ଝିଅ ଗୀତାର କଅଁଳ ମନର ଭାବନା ଓ ଶେଷରେ ଅଶ୍ରୁପାତ, ବାସ୍ତବରେ କେତେ ହୃଦୟସ୍ପର୍ଶୀ, ତାହା ସାଧାରଣ ଭାବରେ ପ୍ରକାଶ କରିବା କଷ୍ଟ । 'ଠାକୁର ଘର' ଗଳ୍ପଟିରେ ଗାଳ୍ପିକ ମଧ୍ୟବିତ୍ତର ବ୍ୟସ୍ତ-ବିବ୍ରତ ଜୀବନର ଏକ ଛବି ଆଙ୍କିଛନ୍ତି । ଜୀବନ-ମରଣ ଘାଟିରେ ସୁନନ୍ଦା ଦେବୀ । ଅବସ୍ଥା ତାଙ୍କର ସଙ୍କଟାପନ୍ନ । ପୁଅ ଝିଅମାନେ ମା'ର ଏ ଅବସ୍ଥାରେ ଆସିଛନ୍ତି ; କିନ୍ତୁ ମନେହୁଏ ସତେ ଯେମିତି ମାନବିକ ମୂଲ୍ୟବୋଧ ଆଜି ସଙ୍କଟ ଅବସ୍ଥାରେ ପହଞ୍ଚିଛି । କେବଳ ବିନିକୁ ଛାଡ଼ିଦେଲେ ଅନ୍ୟମାନେ ଯେମିତି ବାଧ୍ୟ ବାଧ୍ୟକତାରେ ଆସିଛନ୍ତି । ସେମାନଙ୍କ ବ୍ୟବହାରରେ ମଧ୍ୟ ଆତ୍ମକୈନ୍ଦ୍ରିକ ଭାବ ଫୁଟି ଉଠିଛି । ବିନି ଏ ସମସ୍ତଙ୍କ ଠାରୁ ଭିନ୍ନ ଉପାଦାନରେ ଗଢ଼ା ପରି ମନେହେଉଛି । ଗଭୀର ଈଶ୍ୱର ବିଶ୍ୱାସ, ବାରମ୍ବାର ଠାକୁର ଘରେ ପ୍ରାର୍ଥନା ତା' ମା'କୁ ବଞ୍ଚାଇବା ପାଇଁ ବିନି କରିଛି । ବିନିର ଆଧ୍ୟାତ୍ମିକ ଅବବୋଧ ଭିତରେ ଲେଖକ ଜୀବନର ମୁକ୍ତି ଖୋଜିଛନ୍ତି । ମା' ତା'ର ବଞ୍ଚିଯାଇଛି । ଗୋଟିଏ ସରଳା ଈଶ୍ୱରବିଶ୍ୱାସୀ ଝିଅର ଅଭୂତ ଭଲପାଇବା ଯେ ମରଣର ଦ୍ୱାରଦେଶରୁ ତା' ମା'କୁ ଫେରାଇପାରେ, ଏଇ ଗଳ୍ପଟିରେ ଏ କଥାଟିକୁ ମନୋଜ୍ଞ ଭାବରେ ପ୍ରକାଶ କରିଛନ୍ତି ଗାଳ୍ପିକ । ଛଳନା, ଅଶ୍ରଦ୍ଧା, ଆଦର୍ଶହୀନତା, କ୍ଲାନ୍ତି, ନୈରାଶ୍ୟର କବଳରୁ କେବଳ ଠାକୁର ହିଁ ଏ ପୃଥିବୀକୁ ପରିତ୍ରାଣ କରିପାରନ୍ତି । 'ସରମାର ରୋମାନ୍ସ' ଗଳ୍ପଟି ପାଠକଲେ, ଜଣେ ନାରୀ ଯେ ଆଉଜଣେ ନାରୀକୁ ପୁରୁଷଠାରୁ ଅଧିକ ସୁଖ ଦେଇପାରେ, ଏ କଥାଟି ବୁଝିହୁଏ । ସରମାର ମୀରାଅପା ସହ ଯେଉଁ ଅସ୍ୱାଭାବିକ ସମ୍ପର୍କ ତା'ର ଭିତରେ ଯେଉଁ ରୋମାନ୍ସ ରହିଛି, ଲେଖକ ତାହାକୁ ଏଥିରେ ଦେଖାଇଛନ୍ତି । ସରମାର ହାତ ଦୁଇଟିକୁ ମୀରାଅପା ନିଜ ହାତରେ ବହୁତ ସମୟ ମିଳାଇ ରଖିବା, ଫେରିବାପରେ ସରମାକୁ ନିଦ ନ ଲାଗିବା ଭିତରେ ଲେଖକ ଏକ ଅଭୂତ ସମ୍ପର୍କର ଆଭାସ ଦେଇଛନ୍ତି । ଏ ସମ୍ପର୍କ ହୁଏତ ହୋଇପାରେ ଏକ ଅପ୍ରାକୃତିକ ସମଲିଙ୍ଗୀ ସମ୍ପର୍କର ପରିପ୍ରକାଶ, ଯାହା ପାଶ୍ଚାତ୍ୟ ଜଗତରେ କିଛି ନୂଆକଥା ନୁହେଁ ; କିନ୍ତୁ ଲେଖକଙ୍କ ପରିଭାଷାରେ ଏହା ହେଉଛି

ନାରୀ ସତ୍ତ୍ୱ ଆଉ ଜଣେ ନାରୀର ରୋମାନ୍ସ । ଗଳ୍ପର ଶେଷ ପର୍ଯ୍ୟାୟରେ ସରମାର ଅନୁଚିନ୍ତା ଭିତରେ ଏହା ସ୍ପଷ୍ଟ ହୋଇ ଉଠିଛି, "ସ୍ୱାମୀର ସଂସାର ଧର୍ମ, କାମ ଓ ଅର୍ଥର ତରଣୀ । ସେଥିରେ ଅଛି ଶାନ୍ତି, ସନ୍ତୋଷ ସବୁ । କିନ୍ତୁ ରୋମାନ୍ସ ? ରୋମାନ୍ସ କ'ଣ ସେ ଜାଣେନା ; କିନ୍ତୁ ମୀରାଅପାର ବିକୃତ ଭଲ ପାଇବାରେ ଥିଲା ବୋଧହୁଏ ତାହାର ଇଙ୍ଗିତ ଟିକିଏ ।" ( ସରମାର ରୋମାନ୍ସ ) ସ୍ୱାମୀର ସ୍ଥୂଳ ସ୍ପର୍ଶ ଓ ତାଡନା ନିଃଶ୍ୱାସ ତୁଳନାରେ ନାରୀ ସତ୍ତ୍ୱ ଆଉ ଜଣେ ନାରୀର ରୋମାନ୍ସ ଯେ ବହୁ ମାତ୍ରାରେ ଅନ୍ତରଛୁଆଁ, ଏପରି ଏକ ଅସ୍ୱାଭାବିକ ବିଷୟକୁ ଗାଳ୍ପିକ ଆମକୁ ସୁନ୍ଦର ରୂପେ ଏଥିରେ ବୁଝାଇ ଦେଇଛନ୍ତି । ଏ ଧରଣର ଗଳ୍ପ ଓଡ଼ିଆ ସାହିତ୍ୟରେ ବିରଳ । ଅନ୍ତର୍ମୁଖୀନ ଜୀବନର ଦୁଃସାହସିକ ପଦକ୍ଷେପ ଭାବରେ ଏଇ ଗଳ୍ପଟି ଏକ ଅଭିନବ ଚିନ୍ତନ । 'ସ୍ୱପ୍ନକଥା' ଗଳ୍ପଟିରେ ନିରଞ୍ଜନ ବାବୁଙ୍କ ଅଦ୍ଭୁତ ମାନସିକ ପ୍ରବୃତ୍ତିକୁ ବାସ୍ତବ ଜୀବନ କରିଛି ଅନେକାଂଶରେ ଉପହସିତ । ବିଚାର ତାଙ୍କର ପରନାରୀ ଜଗତ୍‌ମୋହିନୀଙ୍କ ପଛରେ ଧାଇଁବା । ମଧ୍ୟବୟସ୍କ ପୁରୁଷର ମାନସିକତା ଓ ପାଶବ ପ୍ରବୃତ୍ତିକୁ ଏଥିରେ ସେ ସଫଳ ରୂପେ ଦେଖାଇଛନ୍ତି । 'ଶୀତ ଲହରୀ' ଗଳ୍ପଟିରେ ବୃଦ୍ଧର ମନୋବିଶ୍ଳେଷଣର ଚମତ୍କାରିତା ପାଠକଙ୍କୁ ଆକର୍ଷଣ କରେ । କାର୍ତ୍ତିକ ବାବୁ ଚାକିରି ଜୀବନରୁ ଅବସର ଗ୍ରହଣ ପରେ ଯେଉଁ ଜୀବନ ଅତିବାହିତ କରିଛନ୍ତି, ତା'ର ଏକ ସୁଚିତ୍ରଣ ଏଇ ଗଳ୍ପ । ପ୍ରତ୍ୟେକ ବୃଦ୍ଧର ଜୀବନ କାର୍ତ୍ତିକ ବାବୁଙ୍କ ପରି ନିଃସଙ୍ଗ ଓ ମୃତ୍ୟୁ ଅପେକ୍ଷମାଣ— ଏଥିରେ ଟିକିଏ ହେଲେ ସନ୍ଦେହ ନାହିଁ । ସୁସ୍ଥ ସବଳ ଥିଲେ ବି ଅବସର ପରେ ସମସ୍ତେ ଅକାଳରେ ଏକ ଶୀତ ଲହରୀର ସମ୍ମୁଖୀନ ହୁଅନ୍ତି । ମୃତ୍ୟୁଚିନ୍ତା, ନିଃସଙ୍ଗତା ଓ ଲମ୍ବ ବିଳମ୍ବର ଲୀଳାକୁ ଭାବିବା ବ୍ୟତୀତ ବୋଧହୁଏ ସେମାନଙ୍କ ପାଇଁ ସଂସାରରେ ଆଉ କିଛି ନାହିଁ । କିଶୋରୀ ଚରଣ ମଣିଷ ମନର ଅନନ୍ତ ରହସ୍ୟକୁ ଭେଦ କରିବାକୁ ଯାଇ ଚରିତ୍ରମାନଙ୍କ ସହିତ ଏକାଠିବେଳେ ମିଶିଯାଇଛନ୍ତି । ସବୁ ଶ୍ରେଣୀର ମନୋଗହନର ଗୋପନତାକୁ ଯଥା ସମ୍ଭବ ଅବିକୃତ ଭାବରେ ସେ ବିଶ୍ଳେଷଣ କରିବାରେ ନିପୁଣତା ପ୍ରଦର୍ଶନ କରିଛନ୍ତି ।

କିଶୋରୀ ଚରଣଙ୍କ ଗଳ୍ପଗୁଡ଼ିକରେ ଅନେକାଂଶରେ ନିବନ୍ଧର ଆଭାସ ଦେଖିବାକୁ ମିଳେ । ଏହାଦ୍ୱାରା ସାଧାରଣ ପାଠକ ତାଙ୍କ ଗଳ୍ପ ପ୍ରତି ବିମୁଖ ହୋଇପଡ଼ନ୍ତି । ମାତ୍ର ତାଙ୍କ ଗଳ୍ପରେ ଘଟଣା ବୈଚିତ୍ର୍ୟ ଓ ବୃତ୍ତାନ୍ତ ବଡ଼କଥା ନୁହେଁ । ଅସଲ ହେଉଛି, ମଣିଷର ଅନ୍ତର୍ଜୀବନର ରହସ୍ୟାନୁଶୀଳନ । ସୁତରାଂ ସେ ତାଙ୍କ ଗଳ୍ପ ଭିତରେ ବେଳେ ବେଳେ ଦାର୍ଶନିକ ପରି ଜୀବନ ସମ୍ପର୍କରେ ବହୁ ବିଷୟ କହିଥାନ୍ତି । ଏସବୁ ସାଧାରଣ ପାଠକ ପାଇଁ ବୁଝିବାକୁ କଷ୍ଟସାଧ୍ୟ

ହେଲେ ବି ଏହା ତାଙ୍କ ଗଳ୍ପକୁ ଗୌରବାନ୍ୱିତ କରିଛି । ବିଶ୍ୱର ପ୍ରସିଦ୍ଧ ଗଳ୍ପ ଲେଖକ 'ଓ ହେନେରି'ଙ୍କ ଗଳ୍ପରେ ମଧ୍ୟ ଏହିପରି ନିବନ୍ଧଧର୍ମିତା ରହିଛି । ତାଙ୍କର ପ୍ରସିଦ୍ଧ କ୍ଷୁଦ୍ରଗଳ୍ପ 'Voice of the City' ପଢ଼ିଲେ ଏକ ଦାର୍ଶନିକ ନିବନ୍ଧ ପଢ଼ିଲା ପରି ମନେ ହେବ । ଗଳ୍ପଟି ବୁଝିବାକୁ କଷ୍ଟକର ହେଲେ ବି ଏହା ଯେ ଏକ ପ୍ରସିଦ୍ଧ କ୍ଷୁଦ୍ରଗଳ୍ପ ଏକଥା ସମସ୍ତେ ସ୍ୱୀକାର କରନ୍ତି । ସେହିପରି କିଶୋରୀ ଚରଣଙ୍କ କେତେକ ଗଳ୍ପ ।

କିଶୋରୀ ଚରଣଙ୍କ କ୍ଷୁଦ୍ରଗଳ୍ପର ସଫଳତା ତାଙ୍କର ରଚନା ଶୈଳୀ ଉପରେ ବହୁ ମାତ୍ରାରେ ନିର୍ଭରଶୀଳ । ତାଙ୍କର ବକ୍ତବ୍ୟ, ଆଙ୍ଗିକ ଓ ଚିନ୍ତା ପ୍ରବାହର ଅକୃତ୍ରିମତା ପାଠକକୁ ଆକର୍ଷଣ କରେ । ସହରୀ ଜୀବନର ଦୁଃସ୍ଥାନ୍ତ ପରିବେଶଠାରୁ ଆରମ୍ଭ କରି ସଭ୍ୟ ମଣିଷଙ୍କ ମନର ଗହନ କଥାକୁ ଅତି ସ୍ୱାଭାବିକ ଭାବରେ ପ୍ରକାଶ କରିବାରେ ସେ ଜଣେ ସଫଳ ଶିଳ୍ପୀ । ସ୍ୱାଭାବିକତା ଉପରି ତାଙ୍କ ଗଦ୍ୟର ଭୂଷଣ, 'ଭିନ୍ନ ପାଉଁଶ'ରୁ ତାହାର ଏକ ଦୃଷ୍ଟାନ୍ତ ଦିଆଯାଇପାରେ । "ଦିଲ୍ଲୀରେ ଯମୁନା କୂଳରେ ବର୍ତ୍ତମାନ ଏଇ ଇଲେକ୍ଟ୍ରିକ୍ କ୍ରିମାଟୋରିଅମ, ବନ ବଗିଚା ମଝିରେ ଥିବା ଗୋଟିଏ ଘର, ଘର ଭିତରେ ମେସିନ୍, ମେସିନ୍‌ରେ ମଲାଦେହ ଚଟ୍‌କିନା ପାଉଁଶ ହୋଇଯାଏ—ସ୍ଥା'କୁ ମଶାଣି ବୋଲି କହିବ ? କାହିଁ ଏଠି ଦଗ୍‌ଜଳା କାଠ, ହାଣ୍ଡି, ଖପରା, ବାଲିଆ, ଶାଗୁଣାଙ୍କ ଦଳ, ଅପରିଚ୍ଛନ୍ନଆ ଅବଶେଷ ? ନା କୋଉ ଭସ୍ମ ମାଡ଼ିପଡ଼ୁଛି ? ବରଂ ଏଇ ନିସ୍ତବ୍ଧ ନିର୍ଜନତା, ଲମ୍ବା ଲମ୍ବା ଗଛମାନଙ୍କର ପତର ସିରସିର ହେଉଛି ଓ କେତେ ଦୂରରେ କ୍ରିମୋଟୋରିଅମ୍‌ର ମାଲୀ କ ଜଗୁଆଳୀ ଘାସ ଉପାଡୁଛି, ଭ୍ରମଣ ଉପଯୋଗୀ ଏଭଳି ପରିବେଶ ଦିଲ୍ଲୀରେ କେଉଁଠି ମିଳିବ ?" (ଭିନ୍ନ ପାଉଁଶ) ତାଙ୍କ ବକ୍ତବ୍ୟର ଆଉ ଏକ ଜୀବନ୍ତ ରୂପ ଏଠାରେ ଉଦ୍ଧାର କରାଯାଇପାରେ । ତାହା ଏହିପରି ;, "ଜଗନ୍ନାଥ ତା'ର ଫୁସୁଫୁସିଆ ଢଙ୍ଗ ଦେଖି ହୋ ହୋ ହୋଇ ହସିଲା—କହିଲା—"ମଲା, ଏକଥା କିଏ ଜାଣି ନାହିଁ ? ତୁ ସିନା କଲୋନିର ବାହାରେ ଥିଲୁ, ଅକାଳେ ସକାଳେ ଖବର ପହୁଞ୍ଚେ ତୋ ପାଖରେ । ଆମେ ପରା ଆଖିରେ ଦେଖିଛୁ ! ନା କ'ଣ କହୁଚୁ ବନ୍ଧୁ ?" ( କରୁଣାରୁ ବଳି ) କିଶୋରୀ ଚରଣ ତାଙ୍କ ଗଳ୍ପରେ ସ୍ୱାଭାବିକତା ସହିତ ଚିନ୍ତା ପ୍ରବାହକୁ ସାବଲୀଳ ଭାବରେ ପ୍ରକାଶ କରିଛନ୍ତି ।

କେତେକ ଆଲୋଚକଙ୍କ ମତରେ କିଶୋରୀ ଚରଣଙ୍କ ଗଳ୍ପମାନଙ୍କରେ ସବୁଠି ବିଳାସ, ବ୍ୟସନ, ଷଡ଼ଯନ୍ତ୍ର ଓ ସହରୀ ଜୀବନର ଯାବତୀୟ ରୂପବିଭବ । ସହରୀ ପରିବେଶ, ସଭ୍ୟ ମଣିଷମାନଙ୍କ ଜୀବନର କଥା ଥିଲେ ସୁଦ୍ଧା ସେ ପଲ୍ଲୀ

ଜୀବନର ଚିତ୍ର ଚିତ୍ରମାଳାକୁ ତାଙ୍କ ଗଳ୍ପମାନଙ୍କରେ ଭଲଭାବରେ ଫୁଟାଇ ଦେଇଛନ୍ତି । ଯେମିତି 'ଭଙ୍ଗା ଖେଳନା' ଗଳ୍ପରେ,

"ଚକା ଚକା ଭଉଁରି
ମାମୁଘର ଚଉଁରି
ମାମୁ ମୋତେ ମାରିଲେ—"

ତଦ୍ଭିନ୍ନ ପ୍ରଚଳିତ ଗାଉଁଲି ପିଲଙ୍କ ସଙ୍ଗୀତ ରହିଛି । 'ହାତକୁ ଖାଇ ଘୋଡ଼ା ଆଗରେ ଦୌଡ଼ିବା', 'ବୁଢ଼ୀ ଡାହାଣୀ ଘିଅ ଖାଇ ଶିଖିଛି', (ସଙ୍ଗୀତାର ବାପା) 'ଶଗା କାଟିବ' (ଗନ୍ଧ), 'ଆଖି ନାହିଁ, କାନ ନାହିଁ ବାଳଗଲେ ଦୋଷ ନାହିଁ' (ପେଗଲ), 'ଈଶ୍ୱର ଯାହା କରନ୍ତି ମଙ୍ଗଳ ପାଇଁ' (ମଣିହରା), ଏଭଳି ବହୁସଂଖ୍ୟକ ଗ୍ରାମ୍ୟ ପ୍ରବଚନ ତାଙ୍କ ଗଳ୍ପମାନଙ୍କରେ ରହିଛି । ସେ ପିଲାମାନଙ୍କ କରତାଳି ଦିଆ ଦୁଷ୍ଟାମି ସଙ୍ଗୀତକୁ ନିପୁଣତାର ସହିତ ତାଙ୍କ ଗଳ୍ପରେ ମଧ୍ୟ ଦେବାକୁ କୁଣ୍ଠାବୋଧ କରିନାହାନ୍ତି । ଏଠାରେ 'ଗଳି ସିନେମା' ଗଳ୍ପରୁ ଉଦ୍ଧାର କରାଯାଇପାରେ ।

"ଛକପିଲା ଗେ—ଥ—ର
ଗଳିପିଲା ସା—ଆ—ର
ଛକପିଲା ମ—ଅ—ର
ଗଳିପିଲା......"

ପିଲାମାନଙ୍କ ମୁହଁରେ ଆବଶ୍ୟକ ସ୍ଥଳେ ଦେଶାତ୍ମବୋଧ ଗୀତ ଉଚ୍ଚାରଣ କରିବାକୁ ସେ ତାଙ୍କ ଗଳ୍ପରେ ଭୁଲି ନାହାନ୍ତି । 'ନାଡ଼ ଓ ମଣିଷ' ଗଳ୍ପରେ ଯେମିତି, "ମୁନୁ ସିଧା ଯାଇଁ ଖଟ ଉପରେ ଚକାମାଡ଼ି ବସିପଡ଼ିଲା ଓ ଆରମ୍ଭ କଲା—

"ଜନନୀ ଜନମ ଭୂମି
ପବିତ୍ର ଭାରତ ଭୂମି
ତୋହର ସନ୍ତାନ ଆମ୍ଭେ ଅଛୁ ସରବେ ।"

କିଶୋରୀ ଚରଣ ତାଙ୍କ ଗଳ୍ପରେ ପ୍ରଚୁର ଇଂରାଜୀ ପ୍ରବଚନ ବ୍ୟବହାର କରିଛନ୍ତି । ପୁଣି ସେଗୁଡ଼ିକର ଇଂରାଜୀ ଅର୍ଥ ମଧ୍ୟ ଦେଇଛନ୍ତି । ମନେହୁଏ ଯେତେ ଯେମିତି ସେ ପାଠକର ବୋଧଶକ୍ତି ପ୍ରତି ସନ୍ଦେହ ପୋଷଣ କରି ଏହିପରି ଭାବରେ ଇଂରାଜୀ ଉକ୍ତି ସହିତ ଓଡ଼ିଆ ଅର୍ଥ ଦେଇଛନ୍ତି । ଏଠାରେ 'ପେଗଲ' ଗଳ୍ପରୁ ଦୃଷ୍ଟାନ୍ତ ଦିଆଯାଇ ପାରେ ।

"I wandered lonely as a cloud........."
(ମେଘ ପରୀଏ ମୁଁ ବୁଲିଲି ଏକାକୀ) ଓ୍ୱାର୍ଡସ୍‌ୱର୍ଥ
"Life is not a spectacle, nor a feast, it is a predicament." (ଜୀବନ ଗୋଟିଏ ତାମସା ନୁହେଁ, ଭୋଜି ନୁହେଁ, ବିପତ୍ତି ।) ଜର୍ଜ ସାନ୍ତାୟନା

"Life is made up of sobs, sniffles and smiles with sniffles Predominating." (ଜୀବନ କୋହ, ଁ ସୁଁ ସୁଁ ଓ ହସକୁ ନେଇ ଗଢ଼ା, ସୁଁ ସୁଁ ହିଁ ସବ ପ୍ରଧାନ । ଓ ହେନେରି

"There are two tragedies of life. One is not to get your heart's desire. The other is to get it." (ଜୀବନରେ ଯୋଡ଼ିଏ ଟ୍ରାଜେଡ଼ି । ଗୋଟିଏ ହେଉଛି ହୃଦୟର କାମନାକୁ ନପାଇବା, ଅନ୍ୟଟି ତାକୁ ପାଇବା ।)-ବର୍ଣ୍ଣାଡ଼ ଶ'

ଏହିପରି ଶହଶହ ଇଂରାଜୀ ଉଦ୍ଧୃତି ତାଙ୍କ ଗଳ୍ପଗୁଡ଼ିକରେ ସଚରାଚର ପରିଲକ୍ଷିତ । ଇଂରାଜୀ ବ୍ୟତୀତ ହିନ୍ଦୀ, ବଙ୍ଗଳା ଭାଷାର ଏ ଧରଣର ଉଦ୍ଧୃତି-ମାନଙ୍କର ତାଙ୍କ ଗଳ୍ପରେ ଅସଦ୍‌ଭାବ ନାହିଁ । ଏସବୁ ବେଳେବେଳେ ବିରକ୍ତିକର ମନେ ହେଲେ ସୁଦ୍ଧା ପ୍ରତ୍ୟେକଙ୍କ ପାଇଁ ଯେ ଶିକ୍ଷଣୀୟ ଏହାକୁ ଅସ୍ୱୀକାର କରିହେବ ନାହିଁ ।

କଣୋଶ୍ୱ ଚରଣଙ୍କ ବର୍ଣ୍ଣନା ଅନେକାଂଶରେ କବିତ୍ୱପୂର୍ଣ୍ଣ । ଧାଡ଼ି କରି ସଜାଡ଼ି ଲେଖିଦେଲେ ତାହା ଆଧୁନିକ କବିତାର ରୂପ ନେଇପାରିବ । ଗୀତଧର୍ମୀ ଏଇ ଗଦ୍ୟଗୁଡ଼ିକ ପାଠକ ପାଇଁ ବାସ୍ତବରେ ଆକର୍ଷଣୀୟ । ସେଇ କବିତ୍ୱପୂର୍ଣ୍ଣ ଗଦ୍ୟର ନମୁନା ଏହିପରି; "କେଉଁଠି ଟିକିଏ ନିଆଁ ଜଳେଇଛନ୍ତି ପାହାଡ଼କୁ ଉଦ୍ଧୁମ କରିବେ ବୋଲି, କେଉଁଠି ଖଣ୍ଡେ କୁଣ୍ଡିଆ ବାନ୍ଧିଛନ୍ତି ପାହାଡ଼ର କେଉଁ ଚନ୍ଦୁଟିକୁ ଘୋଡ଼ାଇ ରଖିବେ ବୋଲି, ଜୀବନର ବାଁଟିକେ ଉପରକୁ ଗୁଡ଼ି ଦେଇ-ଛନ୍ତି ପାହାଡ଼ ଘେରି କୁହୁଡ଼ିରେ ମିଶିଯିବ ବୋଲି ...........

କେବଳ ପାହାଡ, ପାହାଡ଼, ପାହାଡ—ଧୂସର ଶ୍ୟାମଳ, ଚକ୍‌କଣ, କୋମଳ,ବନ୍ଧୁର, କୈମଣି, କୁଳୁକୁଳୁ, ହାସ୍ୟବନ୍ତ, ଗୁରୁଗୁରୁ ଗର୍ବିତ,ନିର୍ଲଜ,ନିଭୃତ, ନିରନ୍ତର........." (ପାହାଡ଼) ଏହାକୁ ଗଦ୍ୟ ନକହି ବରଂ, 'ପଦ୍ୟାୟିତ ଗଦ୍ୟ' କହିବା ଅଧିକ ସମୀଚୀନ । ପୁଣି ପ୍ରତୀକ, ଚିତ୍ରକଳ୍ପର ବ୍ୟାପକ ପ୍ରୟୋଗ ତାଙ୍କ ଗଦ୍ୟରେ ବିଶେଷ ରୂପେ ଦେଖିବାକୁ ମିଳେ । ତାଙ୍କର 'ମେଘମାଳା' ଗଳ୍ପରୁ ଏଠାରେ ଦୃଷ୍ଟାନ୍ତ ଦୁଇଟି ଦିଆଯାଇପାରେ ।

"ପେଟ୍ଟୁଆ କଳାମେଘ, ତା ନାଆଁ ଗନ୍ଧର୍ବ, ବଡ଼ ଲେଉଟାଇଲା । ଆଉ ଟେପରା ଧାରୁଆ ମେଘ, ମୁହଁ ଚୋନ କରିଛି କାମ୍ଭୀର ପରି, ତା ନାଆଁ ଅଥର୍ବ, ଦୂରେଇଗଲା, କିନ୍ତୁ ପେଟ୍ଟୁଆ ତାକୁ ମାଡ଼ି ବସିଲା, ମେଘରେ ମେଘ ମିଶିଗଲା, ଦେହରେ ଦେହ, ଅଣ୍ଟା ଅଣ୍ଟା, ଚପି ହୋଇଗଲାରୁ ଧଳା ଧଳା ନିଃଶ୍ୱାସ ବାହାରି ପଡ଼ିଲା, ହେଲେ ସିଏ ବି ମିଶି ହଜିଗଲା କୁଆଡ଼େ ।"

'ଏଇ ସମୟରେ ଗୋଟିଏ ଲମ୍ବା ବିଜୁଳି ଝେଇଁଗଲା ମେଘ ଭିତରେ ଛାଟ ମାରିଲା ପରି ଏବଂ ଗୋଟିଏ ବିରାଟ ମାଷ୍ଟରିଆ ଘଡ଼ଘଡ଼ି ।" ତାଙ୍କର ଏଇପରି ଚିତ୍ରଧର୍ମୀ ପ୍ରକାଶଭଙ୍ଗୀ ତାଙ୍କ ଗଳ୍ପର କଳାତ୍ମକ ଗୌରବର ଅଭିବୃଦ୍ଧି କରିଛି ।

କିଶୋରୀଚରଣ ଓଡ଼ିଆ ଗଳ୍ପ ସାହିତ୍ୟର ଜଣେ ବିଶିଷ୍ଟ ଗଳ୍ପ ଲେଖକ, ଯେ ତାଙ୍କ ଗଳ୍ପରେ ଅନ୍ତରଙ୍ଗ ଭାବରେ ଜୀବନର ସତ୍ୟକୁ ବଡ଼ ଗଭୀର ଭାବେ ବ୍ୟକ୍ତ କରିଛନ୍ତି । ତାଙ୍କ ବକ୍ତବ୍ୟ ଭିତରେ ସେ ଜୀବନକୁ ଅଙ୍ଗୀକାର କରିବା ସହିତ ବିପୁଳ ପୃଥିବୀର ମର୍ମୋଦ୍‌ଘାଟନ କରିବା ପାଇଁ ଯଥାସାଧ୍ୟ ଚେଷ୍ଟା କରିଛନ୍ତି । ସେ ନିଜେ ମଧ୍ୟ ସ୍ୱୀକାର କରନ୍ତି, "ମୋର ବିଶ୍ୱାସ ଯେ ମୁଁ ମୋର ସାହିତ୍ୟରେ ପାପ କରି ନାହିଁ । ଅନ୍ତରଙ୍ଗତା ଓ ଆନ୍ତରିକତାକୁ ଗୋଡ଼େ ଗୋଡ଼େ ଜଗିଛି । ଅସ୍କାର ଓ୍ୱାଇଲଡ୍‌ ତାଙ୍କ ଉକ୍ତ ଅଭିଜ୍ଞତାରୁ ଚିନ୍ତା ଚପୁଡ଼ି କହୁଥିଲେ—ହାଲୁକା ପଣ ମହାପାପ । ଗଭୀର ପାଣିରେ ବୁଡ଼ିଦେଇ ଯାହା ମିଳିଲା ସେଇ ହେଉଛି ରତ୍ନ । ମୁଁ ତାଙ୍କର ଏଇ କଥାଟିର ସାର୍ଥକତା ମର୍ମେ ମର୍ମେ ଅନୁଭବ କରିଛି ଓ ମୋର ଲେଖନୀକୁ ଅନୁରୂପ ନିର୍ଦ୍ଦେଶ ଦେଇଛି ।" (ଠାକୁର ଘର-ନିଜକଥା) ଜଗତର ନିତ୍ୟକାଳୀନ ସତ୍ୟ ଓ ଚିରନ୍ତନ ସୌନ୍ଦର୍ଯ୍ୟକୁ ପ୍ରକାଶ କରିବାରେ ତାଙ୍କ ଗଳ୍ପଗୁଡ଼ିକ ଓଡ଼ିଆ ଗଳ୍ପସାହିତ୍ୟର ଶ୍ରୀବୃଦ୍ଧିରେ ବାସ୍ତବରେ ଏ ସକାଶେ ବିଶେଷ ସହାୟକ ।



# ଜାଗତିକ ଜୀବନର ସତ୍ୟଦ୍ରଷ୍ଟା : ପ୍ରାବନ୍ଧିକ ଚନ୍ଦ୍ରଶେଖର ରଥ

୦ ଚଳିତ ଶତକର ଅନ୍ୟତମ ବିଶିଷ୍ଟ ପ୍ରାବନ୍ଧିକ ଭାବେ ଚନ୍ଦ୍ରଶେଖର ରଥ ସୁ-ବିଦିତ । ଚିନ୍ତାନ୍ୱେଷୀ ଓ ମନନଶୀଳ ପ୍ରବନ୍ଧ ରଚନା କରି ସମକାଳୀନ ଓଡ଼ିଆ ପ୍ରବନ୍ଧ ସାହିତ୍ୟର ଶ୍ରୀ ଓ ସୌଭାଗ୍ୟ ବୃଦ୍ଧିରେ ତାଙ୍କର ନିଷ୍ଠାପର ସାଧନା ସ୍ୱାଗତଯୋଗ୍ୟ । ତାଙ୍କ ପ୍ରବନ୍ଧର ଭାବବସ୍ତୁ ଯେପରି ସୁଦୂରପ୍ରସାରୀ, ସେହିପରି ବଡ଼ ଅଦ୍ଭୁତ ତାଙ୍କର ଶିଳ୍ପନୈପୁଣ୍ୟ । ଶାଣିତ ଚିନ୍ତାର ଦୀପ୍ତି, ମାର୍ଜିତ କଳ୍ପନାର ଅଭିବ୍ୟକ୍ତି, ଚିତ୍ରଧର୍ମୀ ପ୍ରକାଶ ଭଙ୍ଗୀ, କବିତ୍ୱପୂର୍ଣ୍ଣ ବର୍ଣ୍ଣନା, ଆବେଗର ଉଷ୍ମ ସ୍ପର୍ଶ, ସ୍ତରେ ସ୍ତରେ ନାଟକୀୟ ଛଟା ଓ ଆତ୍ମ ପ୍ରତ୍ୟୟପୂର୍ଣ୍ଣ ଆନ୍ତରିକ ଭାଷା ତାଙ୍କ ପ୍ରବନ୍ଧମାନଙ୍କର ସ୍ୱାତନ୍ତ୍ର୍ୟ ଚିହ୍ନିବାରେ ସହାୟକ । ଜୀବନର ସାଧାରଣ ସତ୍ୟଠାରୁ ଆରମ୍ଭ କରି ଜାଗତିକ ଜଟିଳ ଜୀବନର ସୂକ୍ଷ୍ମାତିସୂକ୍ଷ୍ମ ରହସ୍ୟମାନଙ୍କୁ ଭେଦ କରି ପ୍ରବନ୍ଧ ରଚନାରେ ତାଙ୍କର କୃତିତ୍ୱ ଅସାଧାରଣ । ନିଷ୍ଠାର ସହିତ ଜୀବନର ବିଭାବଗୁଡ଼ିକୁ ଅନୁଭବ କରି ସ୍ୱକୀୟ ଚିନ୍ତାରେ ପ୍ରବନ୍ଧ ଆକାରରେ ରୂପ ଦେବାରେ ସେ ଅସାମାନ୍ୟ ଶିଳ୍ପୀ ।

ଚନ୍ଦ୍ରଶେଖର ରଥ ୧୯୭୦ ପରବର୍ତ୍ତୀ ସମୟରେ ପ୍ରବନ୍ଧ ରଚନାରେ ଅଶେଷ ନିଷ୍ଠା ଦେଖାଇଛନ୍ତି । ଏବେ ସୁଦ୍ଧା ତାଙ୍କର ଲେଖନୀ କ୍ରିୟାଶୀଳ । ଜୀବନାନୁଭବର ଗମ୍ଭୀରତା ତାଙ୍କର ଚିନ୍ତା ପରିଧିକୁ କରିଛି ସୁବିସ୍ତୃତ । ଜୀବନର ଆବେଗଗତ, ଆଧ୍ୟାତ୍ମିକ, ଜାନ୍ତବ ସମସ୍ୟା ଓ ମଣିଷର ମଣିଷପଣିଆକୁ ନେଇ ଚିନ୍ତାର ନୂତନ ତୋରଣ ନିର୍ମାଣ କରିବାରେ ତାଙ୍କର ପ୍ରବନ୍ଧଗୁଡ଼ିକ ବେଶ୍ ପ୍ରଭାବଶାଳୀ । ମଣିଷର ଅଶ୍ରୁପୁଲକ, ତା'ର ମନୋରାଜ୍ୟର ଅସରନ୍ତି ଭାବନା, ସ୍ଥିତିଜନିତ ବ୍ୟାକୁଳତା, ଏକାକୀତ୍ୱବୋଧ, ଆଧୁନିକ ଜୀବନବୋଧ ପ୍ରଭୃତିର ପରିପ୍ରକାଶରେ ତାଙ୍କ ପ୍ରବନ୍ଧଗୁଡ଼ିକ ଅନନ୍ୟ । ପୁଣି ସମସାମୟିକ ସମୟର ସ୍ପନ୍ଦନ ତାଙ୍କ ପ୍ରବନ୍ଧଗୁଡ଼ିକୁ ଯୋଗାଇଛି ପ୍ରାଣ ପ୍ରାଚୁର୍ଯ୍ୟ । ଏ ଯାବତ୍ ପ୍ରକାଶିତ ତାଙ୍କର ପ୍ରବନ୍ଧ ସଂକଳନମାନଙ୍କ ମଧ୍ୟରେ 'ମନ

ଅରଣ୍ୟ' (୧୯୭୧), 'ଦୃଷ୍ଟି ଓ ଦର୍ଶନ' (୧୯୭୧), 'ଏ ଯେଉଁ ପୃଥିବୀ' (୧୯୭୫), 'ମୁଁ ସତ୍ୟଧର୍ମା କହୁଛି' (୧୯୭୭), 'ମଧୁ ସନ୍ଧାନ' (୧୯୭୮), 'ଉତ୍ତର ଅରଣ୍ୟ, (୧୯୮୦), 'ଅଶ୍ରୁତ ସ୍ୱର' (୧୯୮୧), 'କ୍ରୀଡ଼ାଦ୍ୱାପର ସ୍ୱପ୍ନ' (୧୯୮୧), 'ରଥ ସପ୍ତକ' (୧୯୮୩) ପ୍ରଭୃତି ପ୍ରଧାନ ।

ସେ ଉଭୟ ଇଂରାଜୀ ସାହିତ୍ୟ ଓ ସଂସ୍କୃତ ସାହିତ୍ୟରୁ ତାଙ୍କ ପ୍ରବନ୍ଧ ରଚନା ପାଇଁ ପ୍ରେରଣା ଲାଭ କରିଛନ୍ତି । ଉପନିଷଦ, ଗୀତା, ଭାଗବତ, ମହାଭାରତ, ରାମାୟଣ ପ୍ରଭୃତି ସଂସ୍କୃତ ଗ୍ରନ୍ଥମାନଙ୍କର ପ୍ରଭାବ ତାଙ୍କ ପ୍ରବନ୍ଧମାନଙ୍କରେ ପରିଲକ୍ଷିତ । ବିଂଶ ଶତକର ଇଂରାଜୀ ସାହିତ୍ୟର ପ୍ରସିଦ୍ଧ ପ୍ରାବନ୍ଧିକ ବର୍ଟ୍ରାଣ୍ଡ ରସେଲ, ଜି. କେ. ଚେଷ୍ଟରଟନ୍, ଜେ. ବି. ପ୍ରିଷ୍ଟେଲି, ଆଲଡସ୍ ହକ୍ସଲେ ପ୍ରମୁଖ ତାଙ୍କୁ ପ୍ରବନ୍ଧ ରଚନା ପାଇଁ ଯୋଗାଇଛନ୍ତି ଯଥେଷ୍ଟ ମାନସିକ ପ୍ରେରଣା । ସେ ମଧ୍ୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦାର୍ଶନିକ ଭାବଧାରା ମାନଙ୍କରୁ ତାଙ୍କ ପ୍ରବନ୍ଧ ରଚନା ସକାଶେ ଅନେକ ଖୋରାକ ପାଇଛନ୍ତି । ବୁଦ୍ଧ, ଶଙ୍କର, ଶ୍ରୀ ଅରବିନ୍ଦ, ବିବେକାନନ୍ଦ, ମହାତ୍ମାଗାନ୍ଧି ପ୍ରଭୃତି ମନୀଷୀମାନଙ୍କ ଦାର୍ଶନିକ ଭାବଧାରାରେ ସେ ଅନେକାଂଶରେ ଅନୁପ୍ରାଣିତ । ସକ୍ରେଟିସ୍, ପ୍ଲାଟୋ, ଆରିଷ୍ଟଟଲ୍ ପ୍ରମୁଖ ଗ୍ରୀକ୍ ଚିନ୍ତାନାୟକଙ୍କ ଚିନ୍ତାଧାରା ଅନେକାଂଶ ତାଙ୍କ ପ୍ରବନ୍ଧମାନଙ୍କର ଅବୟବ ଗଠନରେ ଗଢ଼ି କରିଛି । କେବଳ ସେତିକି ନୁହେଁ, ସେ ବିଂଶ ଶତକର ଜାଁ-ପଲ୍-ସାର୍ତ୍ରେ, କାମ୍ୟୁ, ସିଗ୍‌ମଣ୍ଡ୍ ଫ୍ରଏଡ୍, ୱିଟ୍‌ଗେନ୍‌ଷ୍ଟାଇନ୍, ବ୍ରାଡ୍‌ଲେ, ହ୍ୱାଇଟ୍‌ହେଡ୍ ପ୍ରମୁଖ ନବଚିନ୍ତକ ମାନଙ୍କ ଭାବଧାରା ସହ ସୁପରିଚିତ । ଏ ସବୁର ସାମଗ୍ରିକ ପ୍ରଭାବ ତାଙ୍କ ପ୍ରବନ୍ଧକୁ ପରିପୁଷ୍ଟ କରିଛି ।

ଚନ୍ଦ୍ରଶେଖର ରଥଙ୍କ ପ୍ରବନ୍ଧଗୁଡ଼ିକ କୌଣସି ଧରାବନ୍ଧା ନିୟମରେ ଆବଦ୍ଧ ନୁହେଁ । ସେ ଅବାଧ ଭାବରେ ଜୋର ସ୍ୱାଧୀନତା ନେଇ ତାଙ୍କର ସୃଜନଶୀଳ ଚିନ୍ତାଧାରାକୁ ପ୍ରବନ୍ଧ ରୂପରେ ଲେଖିଛନ୍ତି । ତାଙ୍କ ପ୍ରବନ୍ଧର ଭାବବସ୍ତୁ (Theme) ପାଇଁ ତାଙ୍କ ଉପରେ କୌଣସି ଲଗାମ ନାହିଁ କହିଲେ ଚଳେ । ମୁକ୍ତ ମନ ନେଇ ସାବଲୀଳ ଭାବରେ ସେ ବ୍ୟକ୍ତି ଜୀବନଠାରୁ ଆରମ୍ଭ କରି ବିଶ୍ୱର ଯାବତୀୟ ଚିନ୍ତା ଆଙ୍କିଛନ୍ତି । ସେ କିଛିକ ଜ୍ଞାନ ପ୍ରଚାର ଉଦ୍ଦେଶ୍ୟରେ ପ୍ରବନ୍ଧ ଲେଖିନାହାନ୍ତି କିମ୍ବା ମନକୁ ରଞ୍ଜେଇବା ତାଙ୍କ ପ୍ରବନ୍ଧର ଲକ୍ଷ୍ୟ ନୁହେଁ । କେବଳ କିଷ୍ଟାର ସହିତ ଜାଗତିକ ଜୀବନର ସତ୍ୟକୁ ସମ୍ମୁଖୀନ ହେବାବେଳେ ସେ ଯେଉଁ ଅନୁଭୂତି ଅର୍ଜିଛନ୍ତି, ତାହାର ଏକ ସ୍ୱୟଂସମ୍ପୂର୍ଣ୍ଣ ପରିପ୍ରକାଶ ହେଉଛି ତାଙ୍କର ପ୍ରବନ୍ଧ । ପ୍ରାବନ୍ଧିକ ରଥଙ୍କ ପ୍ରବନ୍ଧର ଏଇ ବୈଶିଷ୍ଟ୍ୟ ଆଲୋଚନା କଲାବେଳେ ଆଲଡସ୍ ହକ୍ସଲେଙ୍କ ନିମ୍ନ ଉକ୍ତି ପ୍ରଣିଧାନ ଯୋଗ୍ୟ । "The most richly

satisfying essays are those which make the best use, not of one, not of two, but of all the three worlds in which it is possible for the essay to exist Freely, effortlessly, thought and feeling move in these consummate works of art, hither and thither between the essays three poles—from the personal to the universal, from the abstract back to the concrete, from the objective datum to the inner experience.'' (୧) ହକସଲେଙ୍କ ଏହି ଉକ୍ତି ଅନୁଯାୟୀ ଉଚ୍ଚକୋଟୀର ପ୍ରାବନ୍ଧିକ ତା'ର ପ୍ରବନ୍ଧମାନଙ୍କୁ ବ୍ୟକ୍ତିଗତ ଜଗତରୁ ବିଶ୍ୱଭାବନା ଆଡ଼କୁ, ଅବାସ୍ତବରୁ ବାସ୍ତବ ଜଗତକୁ ଓ ବସ୍ତୁନିଷ୍ଠତାରୁ ଆନ୍ତରିକ ଅନୁଭୂତି ପର୍ଯ୍ୟାୟକୁ ନେଇଥାଏ । ଚନ୍ଦ୍ରଶେଖର ରଥଙ୍କ ପ୍ରବନ୍ଧଗୁଡ଼ିକ ପକ୍ଷରେ ଏହି ଉକ୍ତିଟି ଯଥାର୍ଥ ମନେହୁଏ । ସେ ଲେଖିବାବେଳେ ନିଜକୁ ବିଷୟ ସହିତ ଏପରି ସଂଶ୍ଳିଷ୍ଟ କରିଦିଅନ୍ତି, ଯାହାଦ୍ୱାରା ତାଙ୍କ ପ୍ରବନ୍ଧ ହୁଏ ପ୍ରାଣବନ୍ତ । ସେ ଜୀବନର ଯେ କୌଣସି ବିଷୟର ସବୁ ସତ୍ୟକୁ ଉପନ୍ୟାସ ପରି ତାଙ୍କ ପ୍ରବନ୍ଧରେ ପରିବେଷଣ କରିବାରେ ସିଦ୍ଧହସ୍ତ । ତାଙ୍କ ପ୍ରବନ୍ଧର ଭାବବସ୍ତୁ ଜୀବନ ପରି ଅସୀମ, ଗମ୍ଭୀର ଓ ଅତଳ ସ୍ପର୍ଶୀ । ଏ ସମ୍ପର୍କରେ ପୁଣି ହକ୍ସଲେଙ୍କ ଉଦ୍ଧାର କରି କୁହାଯାଇପାରେ, "Like the novel, the essay is a literary device for saying almost everything about almost anything.''. (୨) ଏଣୁ ଭାବବସ୍ତୁ ଦୃଷ୍ଟିରୁ ଚନ୍ଦ୍ରଶେଖର ରଥଙ୍କ ପ୍ରବନ୍ଧଗୁଡ଼ିକୁ ବିଭାଜନ କରିବା ଏକ ଅସାଧ୍ୟ ବ୍ୟାପାର । ସେ ଯେ କୌଣସି ବିଷୟ ଉପରେ ପ୍ରବନ୍ଧ ଲେଖିବାରେ ପାରଙ୍ଗମ । ତାଙ୍କ ଚେତନାରେ ସାଧାରଣ ବସ୍ତୁଟିଏ ଏପରି ଢଙ୍ଗରେ ନବଜନ୍ମ ନିଏ, ଯାହାକୁ ସେ ଚମତ୍କାର ପ୍ରବନ୍ଧ ଆକାରରେ ରୂପ ଦେଇପାରନ୍ତି । ଏକ ବିଶେଷ ଭାବାବିଷ୍ଟ ଅବସ୍ଥାରେ ସେ 'ଶୁଣନ୍ତୁ' ପରି ଏକ ସାଧାରଣ ବିଷୟ ଠାରୁ ଆରମ୍ଭ କରି 'କ୍ରୀତଦାସର ସ୍ୱପ୍ନ' ପରି ଅସାଧାରଣ ବିଷୟ ସମ୍ପର୍କରେ ପ୍ରବନ୍ଧ ରଚନା

---

୧ । Aldous Huxly—Collected Essays (Ist Edition) preface—page-vii.

୨ । Aldous Huxly—Collected Essays (Ist Edition) preface—page-v.

କରିପାରନ୍ତି । ହୃଦୟରୁ ଭାବଟିଏ ଆସିବାବେଳେ ତାକୁ ଅର୍ଥପୂର୍ଣ୍ଣ କରିବା ପାଇଁ ପ୍ରତି ଲେଖକ ଯେପରି ସ୍ୱ-ଅନୁଭୂତି ଉପରେ ନିର୍ଭର କରିଥାଏ, ସେହିପରି 'ପ୍ରାବନ୍ଧିକ ରଥ ତାଙ୍କ ଅନ୍ତରର ଭାବକୁ ଅନୁଭୂତିରେ କରିଛନ୍ତି ରୂପାୟିତ । ଲୌକିକ ବ୍ୟକ୍ତିଗତ ଭାବାନୁଭୂତିକୁ ବସ୍ତୁ ପ୍ରତୀକ ମାଧ୍ୟମରେ ରୂପଦାନ କରିବା ହେଉଛି ଚନ୍ଦ୍ରଶେଖର ରଥଙ୍କ ପ୍ରବନ୍ଧର ସ୍ୱାତନ୍ତ୍ର୍ୟ । ଏ ହେତୁ ଭାବବସ୍ତୁ କଥାଟି ଆଲୋଚନା କଲାବେଳେ ଆତ୍ମିକ ଭାବ ସହିତ ବହିର୍ଭାବ ଆପେ ଆସି ପହଞ୍ଚେ । କୌଣସି ଲେଖକର ଆତ୍ମିକ ଭାବ ବିଶ୍ଳେଷଣ ବାସ୍ତବରେ ଏକ ଜଟିଳ ପ୍ରକ୍ରିୟା । ତଥାପି ଆଲୋଚନା ସୁବିଧା ଦୃଷ୍ଟିରୁ ତାଙ୍କ ପ୍ରବନ୍ଧର ଭାବବସ୍ତୁକୁ ଏହିପରି ବିଭାଜନ କରାଯାଇପାରେ । (କ) ଆଧିଭୌତିକ ଚେତନା ଓ ଆତ୍ମିକ ଭାବ ଆଧାରିତ ପ୍ରବନ୍ଧ (ଖ) ସାହିତ୍ୟ ସଂପର୍କିତ ସୃଜନଧର୍ମୀ ପ୍ରବନ୍ଧ, (ଗ) ସୂକ୍ଷ୍ମମାନବିକ ଚେତନା ମୂଳକ ପ୍ରବନ୍ଧ, (ଘ) ନାଗରିକ ଜୀବନ ଭିତ୍ତିକ ସମସ୍ୟା ବହୁଳ ପ୍ରବନ୍ଧ ।

ଜଣେ ସତ୍ୟଦ୍ରଷ୍ଟା ଭାବରେ ପ୍ରାବନ୍ଧିକ ଚନ୍ଦ୍ରଶେଖର ରଥ ନିତ୍ୟ ପରିଦୃଷ୍ଟ ଜଗତ୍ ଓ ମଣିଷକୁ ନେଇ ପ୍ରବନ୍ଧ ଲେଖିଥିଲେ ସୁଦ୍ଧା, ସେ ଏହା ଭିତରେ ଅନ୍ୟ ଏକ ଅଲୌକିକ ଭାବରାଜ୍ୟର କଥା କହିଛନ୍ତି । ଜଗତ ସମ୍ମୁଖରେ ସେ ଏକ ବିଶ୍ୱାସର ଛବି ତାଙ୍କ ପ୍ରବନ୍ଧଗୁଡ଼ିକ ମାଧ୍ୟମରେ ଆଙ୍କିଛନ୍ତି । ନାଗରିକ ଜଞ୍ଜାଳର ସୀମା ଅତିକ୍ରମ କରିବା ପାଇଁ ସେ ଆପଣାର ଦୃଷ୍ଟିକୁ କ୍ରାନ୍ତଦର୍ଶନ ପାଇଁ ସର୍ବଦା ଉନ୍ମୁକ୍ତ ରଖିଥିଲେ । ଫଳରେ ସାଂସାରିକ ଅନ୍ଧକାରକୁ ଭେଦ କରି ତାଙ୍କର ମେଧାବୀ ଦୃଷ୍ଟି ଏକ ମହାନ୍ ସତ୍ତାର ସନ୍ଧାନ କରିଛି । ଭାରତୀୟ ସଂସ୍କୃତି ଓ ଉପନିଷଦୀୟ ପରଂପରାରେ ଉଦ୍‌ବୁଦ୍ଧ ପ୍ରାବନ୍ଧିକ ରଥ ତାଙ୍କ ପ୍ରବନ୍ଧରେ ଏକ ବୃହତ୍ତର ଜୀବନ-ଦୃଷ୍ଟିର ସନ୍ଧାନ କରିଛନ୍ତି । ବିଶେଷ କରି ଶ୍ରୀଜଗନ୍ନାଥ ଚେତନା ଉପରେ ଆଧାରିତ ପ୍ରବନ୍ଧଗୁଡ଼ିକ ତାଙ୍କର ଏଇ ଭାବର ଦ୍ୟୋତକ । ଏ ସଂପର୍କରେ ସେ ନିଜେ ମଧ୍ୟ ସ୍ୱୀକାର କରନ୍ତି, "ବେଳେବେଳେ ବନ୍ଦୀଶାଳାରେ ମହାପୁରୁଷ ଜନ୍ମ ଲଭ କଲାପରି ସାହିତ୍ୟ ସୃଷ୍ଟି ତା'ର ସ୍ରଷ୍ଟାକୁ ଅତିକ୍ରମ କରିଯାଏ । ନିମିତ୍ତ ଭଳି ହଉଥିବା ଲେଖକ ଓ ଲେଖନୀକୁ ବ୍ୟବହାର କରି ସୂକ୍ଷ୍ମ ଭୂମିରୁ ଯେ ଅବତରଣ କରେ, ସେ ଆତ୍ମ ତାହାର ନିର୍ଦ୍ଦେଶରେ ଆସିଥାଏ । ତଥାପି ଅଧିକେ ସବୁ ପ୍ରକାର ସୃଷ୍ଟି ପାଇଁ ଏହା ଏକ ସତ୍ୟ ଯେ, ସ୍ରଷ୍ଟା ତା'ର ସୃଷ୍ଟିଠାରୁ ବୃହତ୍ତର ଆୟତନରେ ଏବଂ ଗଭୀରତାରେ । ସେ ସ୍ୱୟଂ ତା ସୃଷ୍ଟି ପାଇଁ ନିମିତ୍ତ ଏବଂ ଉପାଦାନ । ନିଜର ଗୋଟିଏ ମାତ୍ର ଅଂଶକୁ ସଙ୍କୋଚିତ କରି ତାକୁ ସ୍ୱତନ୍ତ୍ର ସତ୍ତାରେ ସ୍ୱୀକୃତି ଦେବା ସ୍ରଷ୍ଟାର ଅନନ୍ୟ ଅଧିକାର । କିନ୍ତୁ ଏ ନିୟମର ବ୍ୟତିକ୍ରମ ମଧ୍ୟ ହୁଏ । ଶୂନ୍ୟ ଭୂମିରେ ପକ୍ଷୀମାନେ ହଠାତ୍ କୌଣସି ଡାଳ ଉପରକୁ ଓହ୍ଲେଇ ଆସନ୍ତି ସ୍ୱଇଚ୍ଛାରେ । ସେଥିପାଇଁ ସେ ଗଛଟି

ନିଜକୁ ଧନ୍ୟ ମନେ କରେ, ପୂର୍ଣ୍ଣ ମନେକରେ । ତା ଡାଳରେ ଫଳଟିଏ ଓହ୍ଳାଇବା ଯାହା, ପକ୍ଷୀଟିଏ ବସିବା ତାହା ନୁହେଁ । ଅନ୍ୟମାନେ ବୃକ୍ଷଟିକୁ ତା ଡାଳରେ ଆବିଷ୍କାର କରନ୍ତି, ଚିହ୍ନଟ କରନ୍ତି । ସେ ଜନ୍ମ ବନସ୍ପତିର ବହୁତ ସତ୍ୟ ସ୍ୱୀକାର କରେ । " (୩) ସୀମା ଭିତରେ ଅସୀମକୁ, ରୂପରୁ ଅରୂପକୁ, ଇନ୍ଦ୍ରିୟଗ୍ରାହ୍ୟ ଅବସ୍ଥାରୁ ଅତୀନ୍ଦ୍ରିୟ ଭାବଜଗତକୁ ଓ ଅନ୍ତରୁ ଭୂମାକୁ ଯିବାର ବାସନା ତାଙ୍କର ଏଇ ପ୍ରବନ୍ଧମାନଙ୍କରେ ପ୍ରକାଶିତ । 'ମୁଁ କ୍ଷେତ୍ର ଯିବି', 'ହୋ ଭଗତେ', 'ପ୍ରଭୁ ବଜେ', 'ରଥ ପ୍ରସ୍ଥାନ', 'ବାହୁଡ଼ା ବଚ୍ଛେଦ', 'ମଧୁସ୍ରାବପତେ', 'ଠାକୁର ଭଲେ ବସିଜୋଜି', 'କହିବାକୁ ଲାଜ', 'ବଡ଼ମୁହାଁ', 'ଦାରୁଦର୍ଶନ', 'ଛପନଭୋଗ', 'ଖୋଜିବା-ନ ଧାଇବା', 'ଯେ ଯଥା ମାଂପ୍ରପଦ୍ୟନ୍ତେ' ପ୍ରଭୃତି ଏହି ପର୍ଯ୍ୟାୟର ପ୍ରବନ୍ଧ । ଏ ଧରଣର ପ୍ରବନ୍ଧଗୁଡ଼ିକର ସବୁଠାରୁ ବଡ଼ ଉପାଦାନ ହେଉଛି ମଣିଷକୁ ଆଚମ୍ଭିତ କରିବାର ଶକ୍ତି । ଏହା ହେଉଛି ଉଚ୍ଚକୋଟୀର ସାହିତ୍ୟର ବୈଶିଷ୍ଟ୍ୟ । ବହୁ ଦୃଷ୍ଟପୂର୍ବ ପ୍ରସଙ୍ଗ ଏଥିରେ ନୂତନ ରୂପରେ ଦର୍ଶିଯାଏ । ପୁରୁଣା ଭିତରେ ଏକ ନୂତନ ସତ୍ତା ଉଭା ହେଲାପରି ମନେହୁଏ । ଏଠାରେ 'ମୁଁ କ୍ଷେତ୍ରଯିବି' ପ୍ରବନ୍ଧଟିକୁ ବିଚାର କରିଯାଉ । କ୍ଷେତ୍ର ଦର୍ଶନ ପାଇଁ ଭକ୍ତମନର ବ୍ୟାକୁଳତା ସବୁବେଳେ ରହିଛି । ମାତ୍ର ପ୍ରାବନ୍ଧିକ ଯେପରି ଭାବରେ ତାଙ୍କ ପ୍ରବନ୍ଧରେ ଏହାର ଅବତାରଣା କରିଛନ୍ତି, ତାହା ପାଠକଲେ ମନେହୁଏ ସତେ ଯେମିତି କ୍ଷେତ୍ର ଦର୍ଶନ ପାଇଁ ଅସୀମର ପଥରେ ଭକ୍ତଟିଏ ଧାଇଁଛି । ଇନ୍ଦ୍ରିୟ ଜଗତର ସୀମା ଡେଇଁ ଏକ ଅଲୌକିକ ଅତୀନ୍ଦ୍ରିୟଭାବ ଜଗତର ସ୍ପର୍ଶ ପାଇଁ ଭକ୍ତ ପ୍ରାଣର ଆକୁଳତା ବେଶ୍ ହୃଦୟଗ୍ରାହୀ । ତାହା ଏହିପରି, "ଅଞ୍ଜଳିବଦ୍ଧ ହୋଇ ମୋର ହାତ ଯୋଡ଼ିକ ଯଦି କଣ୍ଟାଳ କରନ୍ତି ଯେ, ସେମାନଙ୍କର ଚରମ ଅଭିଳାଷ ଚରିତାର୍ଥ କରିବାକୁ ସେମାନେ ପ୍ରଭୁର ଗରୁଡ଼ ଖମ୍ବକୁ ଥରେ କୁଣ୍ଢାଇବେ; ଗୋଡ଼ ଯୋଡ଼ିକ ଥାଇ କହନ୍ତି ଯେ, ଶରଧା ବାଲିରେ ଘଡ଼ିଏ ମାତ୍ର ଠିଆହେବେ ଏବଂ ଆଖି ଯୋଡ଼ିକ ଅପଲକ ଶୂନ୍ୟକୁ ଗୁହାରି ଯାଚନା କରନ୍ତି ଯେ, ପ୍ରଭୁର ଚକାନୟନରେ ଥରେ ପଖାଳି ହେବେ—ତେଣିକି ମୋର ଆଉ କଣ ଆସୁଅଛି ଥାଇପାରେ ? ମୋ ବଚନ ସତ୍ୟ, ସୁଧି ଜନେ ! ମୋ ଅଙ୍ଗେ ଅଙ୍ଗେ ଉତ୍କଣ୍ଠା ! ରୋମେ ରୋମେ ଉନ୍ମୁଖତା, ମୋର ଶାଖାରେ ଶାଖାରେ ଗୋଟିଏ ମାତ୍ର ଶ୍ୟାମଳ ସତ୍ୟ ପଲ୍ଲବିତ ! ମୁଁ କ୍ଷେତ୍ର ଯିବି ସୁଧି ଜନେ ! ମୋତେ ବାଟ କାଢ଼ି ନେଇଯାଅ ! ସଂସାର ହୁଗୁଳି ଯାଅ ମୋ ପଦରୁ, ମୋତେ ମୁକ୍ତ କର ! କର୍ମ ଜଞ୍ଜାଳ ଖସି ପଡ଼ ମୋ ହାତ ଯୋଡ଼ିକରୁ, ମୋତେ ସ୍ୱଚ୍ଛନ୍ଦ କର, ସହଜ କର ! ମୋ ଆଖି ଯୋଡ଼ିକରୁ ପୋଛି ହୋଇଯାଉ

୩ । ଚନ୍ଦ୍ରଶେଖର ରଥ—ରଥଯନ୍ତ୍ରକ (୧୯୮୩) ପ୍ରାକ୍‌ଭାଷା—

ମୋହାଚ୍ଛନ୍ନ । ମୋତେ ଦୃଷ୍ଟି ଦିଅ ! ହେ ଦଶଦିଗ ପାଳ, ମୋତେ ଧରି ରଖ ! ଦେବତା, ଗନ୍ଧର୍ବ, ଯକ୍ଷ ରକ୍ଷାଦି ମୋତେ ବେଢ଼ି ରହ ! ହେ ମୋର ଅଗଣିତ ପିତୃପୁରୁଷ, ମୋ ପଛରେ ଠିଆ ହୁଅ ! ମୁଁ କ୍ଷେନ ଯିବ ! ମୁଁ କ୍ଷେନ ଯିବ ! ମୁଁ କ୍ଷେନ ଯିବ !!" (୪) ଏଥିରୁ ପ୍ରାବନ୍ଧିକଙ୍କ ଅସ୍ତିତ୍ୱ ଭାବନା ଓ ଅଦମ୍ୟ ଅଧ୍ୟାତ୍ମବୋଧ ଝଲକନା କରହୁଏ ।

ପରମେଶ୍ୱର ପ୍ରତି ମୋହ ଚନ୍ଦ୍ରଶେଖର ରଥଙ୍କ ପ୍ରବନ୍ଧରେ ସୁଲଭ । ଜୀବନର ବିଚିତ୍ର ଦିଗ ଓ ବିବିଧ ପ୍ରଶ୍ନକୁ ଦାର୍ଶନିକର ଦୃଷ୍ଟିରେ ଦେଖିବାରେ ତାଙ୍କର କୃତିତ୍ୱ ଅସାଧାରଣ । ଭାରତୀୟ ଦର୍ଶନ ପ୍ରତି ଗଭୀର ଶ୍ରଦ୍ଧା ତାଙ୍କ ପ୍ରବନ୍ଧକୁ କରିଛି ଜ୍ଞାନଦୀପ୍ତ । ଦୃଶ୍ୟମାନ ଜଗତ ଓ ମଣିଷର ଆତ୍ମା ଭିତରେ ଯେଉଁ ଚିର ରହସ୍ୟମୟ ସମ୍ପର୍କ ବିଦ୍ୟମାନ, ତାକୁ ଅତି ସରଳ ଭାବରେ ସେ ତାଙ୍କ ପ୍ରବନ୍ଧମାନଙ୍କରେ ଫୁଟାଇବାରେ ଧୁରୀଣ । ଭାରତୀୟ ଦର୍ଶନର କର୍ମବାଦ, ଆତ୍ମାର ଅବିନଶ୍ୱରତା, ବ୍ରହ୍ମ ସତ୍ୟମ୍ ଜଗତ୍ ମିଥ୍ୟା, ଜୀବୋ ବ୍ରହ୍ମୈବ କେବଳମ୍ ପ୍ରଭୃତି ଜଟିଳ ତତ୍ତ୍ୱକୁ ସେ ମନୁଷ୍ୟ ଜୀବନୋଚ୍ଛ୍ୱାସ ଭିତରେ ତାଙ୍କ ପ୍ରବନ୍ଧରେ ବିଶ୍ଳେଷଣ କରିବାକୁ ସଙ୍କୋଚ ବୋଧ କରିନାହାନ୍ତି । ସୁତରାଂ, ଅନ୍ତରଙ୍ଗ ଭାବରେ ଜୀବନର ସତ୍ୟକୁ ସ୍ୱଅନୁଭୂତିରେ ଉପଲବ୍ଧି କଲାବେଳେ ସେ ଭାରତୀୟ ଦର୍ଶନର ପରିଧି ଭିତରେ ଗତି କରିବାକୁ ଆନନ୍ଦାନୁଭବ କରନ୍ତି । 'ଶୁଣନ୍ତୁ', 'ପରିଚୟ', 'ମୁଁ କିଏ' ପ୍ରଭୃତି ଦାର୍ଶନିକ ଚିନ୍ତା ସମ୍ବଳିତ ପ୍ରବନ୍ଧ ପାଠକଲେ ଏହି ସତ୍ୟରେ ଉପନୀତ ହେବାକୁ ହୁଏ । ତାଙ୍କର ଦାର୍ଶନିକ ପ୍ରବନ୍ଧଗୁଡ଼ିକ ସାଧାରଣତଃ ଆସ୍ତିକ ଭାବ ଚେତନାରେ ଭାରାକ୍ରାନ୍ତ । ଏ ଧରଣର ପ୍ରବନ୍ଧରେ ଜୀବନର ଆତ୍ମଦର୍ଶନ ଜନିତ ଆତୁରତା ଓ ପରମାତ୍ମା ସହିତ ମିଶିବାର ଅନ୍ତିମ ବାସନାକୁ ସାହିତ୍ୟିକର ସୌନ୍ଦର୍ଯ୍ୟ ଦୃଷ୍ଟି ନେଇ ସେ ତର୍ଜମା କରିଛନ୍ତି ।

ସାହିତ୍ୟ ସମ୍ପର୍କିତ ସୃଜନଧର୍ମୀ ମୌଳିକ ପ୍ରବନ୍ଧଗୁଡ଼ିକରେ ପ୍ରାବନ୍ଧିକଙ୍କ ମନସ୍ୱିତା ଅବଶ୍ୟ ଉପଲଭ୍ୟ । ଏଗୁଡ଼ିକରେ ଆବେଗପୂର୍ଣ୍ଣ ଭାବମୟତା ଓ ସୂକ୍ଷ୍ମ ସୌନ୍ଦର୍ଯ୍ୟ ଚେତନା ଭିତରେ ତାଙ୍କର ପାଣ୍ଡିତ୍ୟ ଝାପ୍‌ସା ଜହ୍ନ ଆଲୁଅ ପରି ପ୍ରୀତିକର । ଚିନ୍ତାଶୀଳତା ସହିତ ନାଟକୀୟତା ଓ ଗତିଧର୍ମିତା ଏ ପ୍ରବନ୍ଧଗୁଡ଼ିକୁ କରିଛି ହୃଦ୍ୟ । ଏ ଧରଣର ପ୍ରବନ୍ଧମାନଙ୍କୁ ପଢ଼ିଦେଲେ ପାଠକର ପ୍ରାଣ ପୁଲକିତ ହୁଏ । ଜୀବନର ବିଚିତ୍ର ଅନୁଭୂତିକୁ ପୁଞ୍ଜି କରି ଏ ପ୍ରବନ୍ଧଗୁଡ଼ିକ ରଚିତ । କେଉଁଠି କବିବନ୍ଧୁଙ୍କୁ ଆବେଗପୂର୍ଣ୍ଣ ଭାଷାରେ ସେ ରଚନା ଲେଖିବାର ସୂତ୍ର ବତାଇଛନ୍ତି ତ,

୪ । ଚନ୍ଦ୍ରଶେଖର ରଥ—ରଥସପ୍ତକ (୧୯୮୩), 'ମୁଁ କ୍ଷେନ ଯିବ'—ପୃଷ୍ଠା-୩

କରିଥିବା ରଚନାକୁ କବିଧର୍ମ ଭାବେ ସ୍ୱୀକୃତ ଦେଇଛନ୍ତି । ପୁଣି ମନ୍ତ୍ରଦ୍ରଷ୍ଟା ଋଷି ପରି ନିଜର ଜୀବନ କାହାଣୀ ଶୁଣାଇବାକୁ ଯେ କୁଣ୍ଠା ପ୍ରକାଶ କରିନାହାନ୍ତି । ତାଙ୍କ ପାଇଁ ଲେଖିବା ମଣିଷର ଶ୍ୱାସକ୍ରିୟା ପରି ସ୍ୱାଭାବିକ ଧର୍ମ । ଏ ସମ୍ପର୍କରେ 'ମୁଁ ଲେଖେ କାହିଁକି ?' ଶୀର୍ଷକ ଏକ ପ୍ରବନ୍ଧରେ ସେ କହନ୍ତି, "ମନ ଭିତରେ ଅନେକ ସ୍ୱପ୍ନ । ସେ ସବୁ ଉଦ୍‌ଗ୍ରୀବ ହୋଇ ଉଠୁଥାନ୍ତି ଫିଟି ଆସିବାକୁ । ସେଗୁଡ଼ାକୁ ଧାରଣ କରିବା, ଲମ୍ବର ଘୋଡ଼ାକୁ ଧାପୁଣି କଲାପରି । ଏତେ ହଠାତ୍ ଉଚ୍ଛ୍ୱାସ ଲାଗିଲା, କ୍ଳାନ୍ତ ଲାଗିଲା, କିନ୍ତୁ ମୋଟ ଉପରେ ଭଲ ଲାଗିଲା । ଦେଖିଲିଯେ ମୁଁ ଜଣେ ଲେଖି ପକାଇଛି । ଲେଖା ଆତ୍ମପ୍ରକାଶର ମାଧ୍ୟମ ରୂପେ ମନକୁ ମନ ଆସିଥିଲା । ଏମିତି ଆସିନଥିଲେ ମୁଁ ଲେଖି ନଥାନ୍ତି । ଜାଣି ନଥାନ୍ତି ଲେଖା କ'ଣ ! ଆସେ ଆସନ୍ତୁ ମୁଁ ତାକୁ ସ୍ୱାଭାବିକ ଭାବରେ ଗ୍ରହଣ କଲି । ଯେମିତି ଗ୍ରହଣ କରିଥିଲି ବହୁ ଦିନ ତଳେ ଶୈଶବର ବହୁତେ ସିଡ଼ି କଥା ଭିତରେ ଏ ଭାଷାଟିକୁ । ପରେ ଶିକ୍ଷା ମାଧ୍ୟମରେ ଆହୁରି ଯେତେ ସବୁ ଭାଷା ଆସିଲେ, ତା କେବଳ ଭାବର ବଣିକ ପାଇଁ, ଆତ୍ମପ୍ରକାଶ ପାଇଁ ନୁହେଁ—ମୋ ପାଣି ପବନରେ ମିଶି ସେମାନେ ମୋ ଭିତରକୁ ତ ଜଣପାରି ନାହାନ୍ତି । ଏଣୁ ଲେଖା ଯେତେବେଳେ ନୂଆ ସମ୍ଭାବନା ନେଇ ଆସିଲା, ମୁଁ ତାକୁ ଗ୍ରହଣ କଲି । ସେ ମୋତେ ଅଧିକାର କରିବା ମଧ୍ୟ ମୁଁ ଅନୁଭବ କଲି, ଆବିଷ୍କାର କଲି ନିଜକୁ, ନୂଆ କରି ଦେଖିଲି ସଂସାରକୁ । ମୋର ସମସ୍ତ ସତ୍ତାକୁ ତାହା ଧୀରେ ଧୀରେ ସଞ୍ଚାରିତ କଲା, ଉଦ୍‌ବର୍ତ୍ତିତ କଲା । ମୋର ସ୍ୱାଭାବିକ ଜୀବନ ଧର୍ମ ସହିତ ଏକୀଭୂତ ହୋଇଗଲା । ଲେଖିବା ଓ ବଞ୍ଚିବା ମୋ ପାଇଁ ଏକାକାର, ଏକାର୍ଥବାଚୀ । " (*) ଏଇ ଉକ୍ତିରୁ ସୃଷ୍ଟି ସହିତ ତାଙ୍କର ଆତ୍ମୀୟତା ସହଜରେ ବୁଝି ହୁଏ । 'ପୁରସ୍କାର ସ୍ୱୀକାର', 'କବି ପତ୍ନୀ', 'ନିଜକୁ ବାମାମିତ୍ର ମନେ କର', 'ନରକନ୍ନର', 'ପରଜା', 'ସାରଳାଙ୍କ ଶ୍ରମ' ପ୍ରଭୃତି ଏହି ପର୍ଯ୍ୟାୟର ପ୍ରବନ୍ଧ । ଜଗତ ସହିତ ଜୀବନର ସମ୍ପର୍କ ସ୍ଥାପନରେ କଳାସୃଷ୍ଟିର ଉପାଦେୟତାକୁ ବୁଝାଇବାରେ ତାଙ୍କର ଏ ଧରଣର ପ୍ରବନ୍ଧଗୁଡ଼ିକ ଗୁରୁତ୍ୱପୂର୍ଣ୍ଣ । ବୋଧହୁଏ 'why write ?' ସମ୍ପର୍କରେ କହିବାବେଳେ ଜାଁ—ପଲ୍-ସାର୍ତ୍ତ ମଧ୍ୟ ଅନୁରୂପ କଥା କହିଯାଇଥିଲେ, "one of the chief motives of artistic creation is certainly the need of feeling that we are essential in reletionship to the world * * That is I feel

---

* । ଚନ୍ଦ୍ରଶେଖର ରଥ—'ଦୃଷ୍ଟି ଓ ଦର୍ଶନ' (୧୯୭୧) 'ମୁଁ ଲେଖେ କାହିଁକି ?' ପୃଷ୍ଠା—୪୭

myself essential in relation to my creation." (୬) ମନନ, ଅନୁଭୂତ ଓ ସୌନ୍ଦର୍ଯ୍ୟ ଚେତନା ସନ୍ଧତ ଗମ୍ଭୀର ଅନ୍ତର୍ଦୃଷ୍ଟି ତାଙ୍କ ସାହିତ୍ୟିକ ପ୍ରବନ୍ଧର ପ୍ରାଣ ପ୍ରତିଷ୍ଠାରେ ହୋଇଛି ସହାୟକ ।

ସୂକ୍ଷ୍ମ ମାନବୀୟ ଚେତନାକୁ ନେଇ ପ୍ରବନ୍ଧ ରଚନାରେ ଚନ୍ଦ୍ର ଶେଖର ରଥଙ୍କ କୃତିତ୍ୱ ଅବିସମ୍ବାଦିତ । ସାମ୍ପ୍ରତିକ ମଣିଷର ସ୍ଥିତି ଜନିତ ବ୍ୟାକୁଳତା, ପରିବର୍ତ୍ତିତ ମୂଲ୍ୟବୋଧ, ବିଚ୍ଛିନ୍ନତା ବୋଧ, ମୃତ୍ୟୁ ଚେତନା ପ୍ରଭୃତି ଆଜିର ସାହିତ୍ୟକୁ ପ୍ରଭାବିତ କରିଛି । ଆଧୁନିକ ମଣିଷ ଜୀବନରେ ଭୌତିକ ସୁଖ ସମୃଦ୍ଧି ତୁଳନାରେ ତା'ର ମାନସିକ ଅବସାଦ କିଛି କମ୍ ନୁହେଁ । ଜୀବନ ଅନେକାଂଶରେ ଜଗତଠାରୁ, ଈଶ୍ୱରଠାରୁ, ସମାଜଠାରୁ, ପୁଣି ନିଜଠାରୁ ମଧ୍ୟ ବିଚ୍ଛିନ୍ନ । ବୈଜ୍ଞାନିକ ବିକାଶ ଓ ବୈଷୟିକ ସମୃଦ୍ଧିର ଚରମ ସୋପାନରେ ପହଞ୍ଚି ମଧ୍ୟ ମଣିଷ ଆଜି ନିଜ ଜୀବନ ସମ୍ପର୍କରେ ସମ୍ପୂର୍ଣ୍ଣ ଅଜ୍ଞ । ସବୁ କ୍ଷେତ୍ରରେ ସମୃଦ୍ଧି ଘଟିଥିଲେ ମଧ୍ୟ ଜୀବନର ଅନ୍ତସ୍ଥିତ ଶକ୍ତିମାନଙ୍କର ବିକାଶ ଘଟୁନଥିବାରୁ ଆଜିର ମଣିଷ ସତତ ସନ୍ଦିଗ୍ଧ । ମଣିଷର ମନ, ତା'ର ଅନ୍ତଃ ଜୀବନ, ସଂଶୟପୂର୍ଣ୍ଣ ସ୍ଥିତି, କର୍ମ-କୃତିତ୍ୱ, ସୁଖ-ଦୁଃଖ ଇତ୍ୟାଦି ସୂକ୍ଷ୍ମ ବିଷୟମାନଙ୍କୁ ନେଇ ପ୍ରାବନ୍ଧିକ ରଥ କେତେଗୁଡ଼ିଏ ଚମତ୍କାର ପ୍ରବନ୍ଧ ଲେଖିଛନ୍ତି । ସମୟର ପ୍ରବାହରେ ମଣିଷର ସ୍ଥିତି ଜନିତ ଅସହାୟତାକୁ ନେଇ ଲେଖିଛନ୍ତି 'ଗାଡ଼ି ଗୁଡ଼ିଉଦେଲ୍' । Time and space ପରି ଏକ ଜଟିଳ ତତ୍ତ୍ୱକୁ ଅତି ସାଧାରଣ ଭାବରେ ଏଥିରେ ସେ ବୁଝାଇଛନ୍ତି । ସମୟର ପ୍ରଖର ପ୍ରବାହରେ କୌଣସି ବସ୍ତୁ ସ୍ଥିର ନୁହେଁ । ସୁତରାଂ, ମଣିଷ ଜୀବନରେ ଯାହା କିଛି ଘଟଣ, ଅଘଟଣ ଘଟିଥାଏ, ତାହା ହେଉଛି ଅନେକାଂଶରେ ଆକସ୍ମିକ । ପ୍ରାବନ୍ଧିକ ନୂଆ ପୁରୁଣା ପ୍ରବନ୍ଧରେ ପୁରୁଷାନୁକ୍ରମର ତାରତମ୍ୟ (Generation Gap) ପରି ଏକ କ୍ଲିଷ୍ଟ ବିଷୟକୁ ପାଠକକୁ ବୁଝାଇ ଦେଇଛନ୍ତି । ନୂଆ ପୁରୁଣା ଭିତରେ ସେପରି କୌଣସି ବ୍ୟବଧାନ ସେ ଦେଖି ପାରିନାହାନ୍ତି । ମହାକାଳର ପ୍ରବାହରେ ସବୁ କିଛି ଚିର ପୁରାତନ, ପୁଣି ନିତ୍ୟନୂତନ । ଏଣୁ ବୁଝାମଣା ଭିତ୍ତିରେ ଉଭୟ ଉଭୟକୁ ସ୍ୱୀକାର କରିବା ବାଞ୍ଛନୀୟ । ପ୍ରାବନ୍ଧିକ ରଥ ମୃତ୍ୟୁକୁ ନେଇ ଏକ ପ୍ରବନ୍ଧ ଲେଖିଛନ୍ତି । 'ମୃତ୍ୟୁ—ଏକ ବିଳାସ' । ଏଥିରେ ସେ ମୁଖ୍ୟତଃ ପ୍ରାଚ୍ୟ ମୃତ୍ୟୁ ଦର୍ଶନଠାରୁ ପାଶ୍ଚାତ୍ୟ ମୃତ୍ୟୁ ଦର୍ଶନର ତଫାତ୍‌ଟିକୁ ଦେଖାଇଛନ୍ତି । ମୃତ୍ୟୁକୁ ସେ

---

୬ । Jean-paul-Sartre—'What is Literature ?' trauslated py Bernard Frechtman Methuen & Co. LTD. (1983) page-27.

ଆବାହନ କରିଛନ୍ତି । ମୃତ୍ୟୁ ତାଙ୍କୁ ଏଥିପାଇଁ ଭୀତ ନୁହନ୍ତି । ମୃତ୍ୟୁକୁ ସେ ବିଳାସ ଓ ଅମରତ୍ୱକୁ ଅଭିଶାପ ଭାବରେ ଗ୍ରହଣ କରିଛନ୍ତି । 'ମୌନ', 'ଏକାକୀ' ପ୍ରବନ୍ଧ ଦୁଇଟିରେ ସେ ନିଃସଙ୍ଗ ଜୀବନକୁ ଭିନ୍ନ ଦୃଷ୍ଟିରୁ ବିଶ୍ଳେଷଣ କରିଛନ୍ତି । ତାଙ୍କ ପାଇଁ ଜୀବନର ଚରମ ସତ୍ୟ ହେଉଛି 'ମୌନତା' । 'ମୌନ' ପ୍ରବନ୍ଧରେ ସେ କହନ୍ତି; "ବୋଧହୁଏ ନୀରବ ମୌନତା ହିଁ ସତ୍ୟର ଭାଷା, ବିଶ୍ୱ ବିମୁଗ୍ଧ ଏବଂ ଅନୁଭବର ଭାଷା । ମନ ବଚନ ଯେଉଁଠାରେ ପହଞ୍ଚି ନପାରି ନବର୍ତ୍ତି ଆସନ୍ତି, ବା ଯେଉଁଠି ପହଞ୍ଚିଗଲେ - ସେମାନଙ୍କର ସ୍ୱରୂପ ହଜିଯାଏ, ସେ ରାଜ୍ୟ ଅଖଣ୍ଡ ମୌନତାର ରାଜ୍ୟ । ସେଠି ମୃତ୍ୟୁର କାରବାର ।" (୭) ସେ ମଣିଷର ଦୁଃଖ ପୂର୍ଣ୍ଣ ଜୀବନ ଭିତରେ ସୁଖ ଅନ୍ୱେଷା ପ୍ରବୃତ୍ତିକୁ 'ମଧୁ ସନ୍ଧାନ' ପ୍ରବନ୍ଧରେ ବିଶ୍ଳେଷଣ କରିଛନ୍ତି । ଦୁଃଖ ମଣିଷ ଜୀବନର ଚରମ ସତ୍ୟ ହେଲେ ବି ତା'ର ଦୁଃଖ ଭିତରେ ସେ ସୁଖ ଅନ୍ୱେଷା କରେ । ଭିତରେ ସୁଖ, ସମ୍ଭୋଗର ସନ୍ଧାନକୁ ପ୍ରାବନ୍ଧିକଙ୍କ ଭାଷାରେ କୁହାଯାଇଛି 'ମଧୁ ସନ୍ଧାନ' । ପ୍ରାବନ୍ଧିକଙ୍କ ଏହି ପ୍ରବନ୍ଧରେ 'ସୁନାପକ୍ଷୀ' ମିଥ୍‌ଟି ବ୍ୟବହାର କରାଯାଇଛି । ସୁନାପକ୍ଷୀ ପ୍ରସଙ୍ଗଟି ଗ୍ରୀକ୍ ମିଥ୍‌ରୁ ଗୃହୀତ । 'ସୁନାପକ୍ଷୀ' ହୋଇପାରେ ଜୀବନର ପରିବର୍ତ୍ତିତ ମୂଲ୍ୟବୋଧର ପ୍ରତୀକ (Vanishing Values of Life) କାରଣ ସୁନାପକ୍ଷୀ ଅଗ୍ନି ରୂପରେ ଏକଦା ଧରା ପଡ଼ିଥିଲା । ସ୍ୱର୍ଗରୁ ଅଗ୍ନି ଆଣିବା ସକାଶେ ପ୍ରମିଥିଅସ୍‌ଙ୍କର ଅନଧିକାର ସ୍ୱର୍ଗ ପ୍ରବେଶ ଓ ଶାସ୍ତି ସ୍ୱରୂପ ତାଙ୍କୁ ଲୌହ ଶିକୁଳିରେ ବନ୍ଧନ କରି ଶାଗୁଣାମାନଙ୍କୁ କଞ୍ଚା ଖାଇବାକୁ ଦେବା ପ୍ରଭୃତି Aeschylus ଙ୍କ promefheus bond ନାଟକକୁ ସ୍ମରଣ କରାଇଦିଏ । ସୁଖ ପଛରେ ଧାଇଁବାବେଳେ ମଣିଷକୁ ବହୁ ବହନ କରିବାକୁ ପଡ଼େ । ତେଣୁ ମଣିଷ ନିଜ ଭିତରେ ସୁଖ ଅନ୍ୱେଷଣକୁ ହିଁ ଶ୍ରେୟସ୍କର ମଣେ । ତେଣୁ 'ମୁଁ ହିଁ ମଧୁ' ଓ 'ଦୁଃଖଂ ସତ୍ୟମ୍' ବ୍ୟତୀତ ଅନ୍ୟ ପନ୍ଥା ମଣିଷର ନାହିଁ । 'ଶୂନ୍', 'ଅନନ୍ୟ', 'ଇତ୍ୟାଦି', 'କାନ୍ଦୁରି', 'ସାହାରା', 'ସେପାରି', 'ବ୍ୟବଧାନ' ପ୍ରଭୃତି ପ୍ରବନ୍ଧରେ ମଣିଷର ମାନସିକ ଓ ଆବେଗଗତ ଚେତନାର ସ୍ତରକୁ ଛୁଇଁବାରେ ପ୍ରାବନ୍ଧିକଙ୍କ ଶିଳ୍ପୀସୁଲଭ ବ୍ୟକ୍ତିତ୍ୱର ସ୍ୱାତନ୍ତ୍ର୍ୟ ବାରି ହୋଇପଡ଼େ ।

ସାମ୍ପ୍ରତିକ ଜୀବନ ମାତ୍ରେ ସମସ୍ୟା ବହୁଳ । ଧର୍ମ, ରାଜନୀତି, ଦର୍ଶନ, ଶିକ୍ଷା, ସଂସ୍କୃତି ପ୍ରଭୃତି ମଣିଷ ଜୀବନର ସ୍ୱାଭାବିକ ବିକାଶ ପାଇଁ ଉପାଦେୟ ହେଲେ ସୁଦ୍ଧା, ଏ ସବୁକୁ ନେଇ ସମ୍ପ୍ରତି ଯାବତୀୟ ବିଭ୍ରାଟ ଲାଗିରହିଛି । ସାମ୍ପ୍ରତିକ କାଳର ଜଣେ ସଚେତନ ମଣିଷ ଭାବରେ ସେ ଏ ସବୁର ସ୍ୱରୂପ

୭ । ଚନ୍ଦ୍ରଶେଖର ରଥ—'ମୁଁ ସତ୍ୟଧର୍ମୀ କହୁଛି' (୧୯୭୭)—ମୌନ-ପୃ୪୭

ଉଦ୍‌ଘାଟନ କରିବାକୁ ତାଙ୍କ ପ୍ରବନ୍ଧମାନଙ୍କରେ ପୌଣ୍ଡ଼ାତ୍ପଦ ହୋଇନାହାନ୍ତି । ସେ 'ବିଦ୍ୟା ଓ ବିଦ୍ୟାର୍ଥୀ' ପ୍ରବନ୍ଧରେ ଶିକ୍ଷା କ୍ଷେତ୍ରରେ ଘଟୁଥିବା ଆଧୁନିକ ସମସ୍ୟା-ମାନଙ୍କର ବିବିଧ ଦିଗ ଉନ୍ମୋଚନ କରିଛନ୍ତି । ସେ ଏ ସମ୍ପର୍କରେ କହିଛନ୍ତି, "ବିଦ୍ୟା କ୍ଷେତ୍ରରେ ଯାହା କିଛି ବିଶୃଙ୍ଖଳା ଦେଖା ଦେଇଛି, ତାହା କେବଳ ବିଦ୍ୟାର ଅଭାବରେ । ଯେଉଁଠି ଲକ୍ଷ୍ୟ ସ୍ଥିର, ନିର୍ଦ୍ଦିଷ୍ଟ ଶୃଙ୍ଖଳାରେ ନିୟମପ୍ରାଞ୍ଜଳ, ପାରସ୍ପରିକ ସମ୍ପର୍କ ନିୟନ୍ତ୍ରିତ, ସେଇଠି ବିଦ୍ୟା-ଭ୍ୟାସ ସଫଳ ଏବଂ ସାର୍ଥକ । ଯେଉଁଠି କିନ୍ତୁ ବିଦ୍ୟାବିଷୟକ ଜ୍ଞାନ ଅପରିପକ୍ୱ, ଶ୍ରଦ୍ଧା ସମ୍ମାନ ପରିବର୍ତ୍ତେ ଅସୂୟା ଦ୍ୱେଷ ହିଁ ସମ୍ପର୍କର ନିୟାମକ, ଯେଉଁଠି କର୍ତ୍ତବ୍ୟଜ୍ଞାନର ସଚେତନତା ନାହିଁ, ଯେଉଁଠି କେବଳ ବୃତ୍ତି ଅନ୍ୱେଷଣକାରୀ ବୈଶ୍ୟ-ଚେତା ଦୁର୍ବିନୀତ ମଦାନ୍ଧ ବ୍ୟକ୍ତି ହୁଙ୍କାର କରୁଥାନ୍ତି, ସେଇଠି ବିଦ୍ୟା ଏକ ପ୍ରହସନ । ଉଭୟେ 'ବିଦ୍ୟା' ଏବଂ 'ବିଦ୍ୟାର୍ଥୀ' ଭିନ୍ନାର୍ଥବାଚକ ଦୁଇଟି ବ୍ୟଞ୍ଜନାଶୂନ୍ୟ ଶବ୍ଦ ମାତ୍ର ।" (୮) ପ୍ରାବନ୍ଧିକଙ୍କର ଓଡ଼ିଆ ଜାତି ପ୍ରତି ଶ୍ରଦ୍ଧା ଓ ସଂସ୍କୃତିପ୍ରୀତି ଅଦମ୍ୟ । ସମ୍ପ୍ରତି ଆମେ ସଂସ୍କୃତି ଅନୁକରଣ ବ୍ୟାଧିରେ ଆକ୍ରାନ୍ତ ହୋଇଥିବାରୁ ସେ ଏଥି ସକାଶେ ବଡ଼ ଅସ୍ୱସ୍ତି ଅନୁଭବ କରିଛନ୍ତି । ସମୟର ସୁଅରେ ଭାସି ନଯାଇ ଆମ ସଂସ୍କୃତିର ମୌଳିକ ବିଭବର ସୁରକ୍ଷା ପାଇଁ ତାଙ୍କର ଚିନ୍ତାଧାରା ତାତ୍ପର୍ଯ୍ୟପୂର୍ଣ୍ଣ । ଆମ ସଂସ୍କୃତିର ସ୍ୱାତନ୍ତ୍ର୍ୟ ରକ୍ଷା ପାଇଁ ପ୍ରାବନ୍ଧିକଙ୍କ ସଚେତନତା ବାସ୍ତବରେ ସ୍ମରଣୀୟ । ଏଠାରେ ତାକୁ ଉଦ୍ଧାର କରୁଛୁ । "ନଈର ସୁଅ କାଟି ନିର୍ଦ୍ଦିଷ୍ଟ ଦିଗରେ ଗଡ଼ିବା ପିଜା ଜାଗ୍ରତ ଦାୟିତ୍ୱବାନ ସମର୍ଥ ଏବଂ ମର୍ଯ୍ୟାଦାବନ୍ତ ମଣିଷର କାମ, କିନ୍ତୁ ସ୍ରୋତରେ ଭାସିଯିବାର ସହଜ ପ୍ରକ୍ରିୟାକୁ ଆମେ ଆପଣେଇ ନେଇଛୁ । ପୃଥିବୀରେ ଅନେକ ସଂସ୍କୃତି ଲୋପ ପାଇ ଯାଇଛି । ଆମ ସଂସ୍କୃତିର ପରମ୍ପରା ଏଇଠି ଯଦି ଛିଣ୍ଡି ଯାଏ, ସେଥିରେ ସୃଷ୍ଟି ଗୋଳମାଳ ହୋଇଯିବନାହିଁ । ଜୀବନର ପ୍ରବହମାନତା ଅନିବାର୍ଯ୍ୟ, କାରଣ ତାହା ଆମ ହାତରେ ନାହିଁ ; କିନ୍ତୁ ସଂସ୍କୃତିର ପ୍ରବହମାନତା ପାଇଁ ଆମେହିଁ ଦାୟୀ । ପ୍ରବଳ ସୁଅ ମୁହଁରେ ଯଦି ଏବେ ତାକୁ ଗୁଡ଼ି ଭାସିଯିବା, ଆଉ ଦୁଇପୁରୁଷ ପରେ ସଚେତନ ଓଡ଼ିଆ ପୁଅମାନେ ଖୋଜିଲେ ଆଉ ତାକୁ ପାଇବେ ନାହିଁ ।

---

୮ । ଚନ୍ଦ୍ର ଶେଖର ରଥ—ଏ ଯେଉଁ ପୃଥିବୀ (୧୯୭୫) ବିଦ୍ୟା ଓ ବିଦ୍ୟାର୍ଥୀ—
ପୃଷ୍ଠା ୫୯

ବୈତରଣୀରେ କାର୍ତ୍ତିକପୂର୍ଣ୍ଣିମାର କଦଳୀ ବାହୁଙ୍ଗା ଦୀପ ଅନେକ ଦୂରକୁ ଭସି ଯାଇଥିବ ।" (୯)

ସାମ୍ପ୍ରତିକ ଲେଖକ ଅନେକ ପରିମାଣରେ ବ୍ୟକ୍ତିସଚେତନ ହେଲେ ମଧ୍ୟ ସେ ସମାଜର ସଭ୍ୟ ଭାବରେ ତା'ର ସମାଜ ବ୍ୟବସ୍ଥା ସମ୍ପର୍କରେ ସଚେତନ । ପ୍ରାବନ୍ଧିକ ଚନ୍ଦ୍ରଶେଖର ରଥ ଅନେକାଂଶରେ ସମାଜମନସ୍କ । ମାନବୀୟ ସାମାଜିକ ଜୀବନରେ ବିଶ୍ୱାସୀ ସେ । ଶୃଙ୍ଖଳା, ସଂଯମ ଓ ସଦାଗ୍ରହ ଉପରେ ତାଙ୍କର ସାମାଜିକ ଆଭିମୁଖ୍ୟ ପ୍ରତିଷ୍ଠିତ । ସ୍ୱାଧୀନ ଭାବରେ ସମାଜରେ ବଞ୍ଚିବାପାଇଁ ବ୍ୟକ୍ତିଗତ ସଂକୀର୍ଣ୍ଣ ସ୍ୱାର୍ଥକୁ ଜଳାଞ୍ଜଳି ଦେବା ବିଧେୟ । ତା' ଛଡ଼ା ଅନ୍ୟ ପ୍ରତି ସହାନୁଭୂତି-ପ୍ରବଣ ନହେଲେ ସାମାଜିକ ଜୀବନର ସ୍ୱାଦ ଅନୁଭବ କରିହେବନାହିଁ । ସେଥିପାଇଁ ପ୍ରାବନ୍ଧିକଙ୍କ ଆହ୍ୱାନ, "ଯେଉଁ ପର୍ଯ୍ୟନ୍ତ ମଣିଷ ତା ର ସଂକୀର୍ଣ୍ଣ ସ୍ୱାର୍ଥ ବନ୍ଧନରୁ ଉଛୁଳି ଯାଇ ଅନ୍ୟକୁ ତା' ନିଜ ଭିତରେ ଅନୁଭବ ନ କରିଛି, ତା' ଅସୁବିଧାକୁ ନିଜ ଅସୁବିଧା ପରି ବୁଝି ନ ପାରିଛି ଏବଂ ସେହି ଅନୁପାତରେ ତା'ର ସୁବିଧାକୁ ଦୃଷ୍ଟିରେ ରଖି ପ୍ରୟୋଜନ ବେଳେ ନିଜକୁ ନିଜେ ସଂଯତ ନ କରିଛି, ସମାଜରେ ବଞ୍ଚିବା ସମ୍ଭବ ନୁହେଁ । ଶୃଙ୍ଖଳାରେ ନିଜେ ଜାଣିଶୁଣି ବାନ୍ଧିହେବାକୁ ଯେ ସ୍ୱୀକୃତି ଦେଇ ପାରୁନାହିଁ, ସେ ସମାଜରେ ଥାଇ ସ୍ୱାଧୀନତାର ସ୍ୱାଦୁ ପାଇ ପାରିବ ନାହିଁ ।" (୧୦)

ପ୍ରାବନ୍ଧିକ ଚନ୍ଦ୍ରଶେଖର ରଥ ସୌନ୍ଦର୍ଯ୍ୟର ମୁଗ୍ଧ ଉପାସକ । ସୂକ୍ଷ୍ମ ସୌନ୍ଦର୍ଯ୍ୟଚେତନା ତାଙ୍କ ପ୍ରବନ୍ଧଗୁଡ଼ିକର ଭୂଷଣ । ମଣିଷଜୀବନର ଅନ୍ତଃ-ସୌନ୍ଦର୍ଯ୍ୟ ସହିତ ପ୍ରକୃତିର ବହିଃସୌନ୍ଦର୍ଯ୍ୟକୁ ମିଶେଇ ଅନୁଭବ କରିବାରେ ତାଙ୍କର ସିଦ୍ଧି ପ୍ରଶଂସନୀୟ । ତାଙ୍କ ସୌନ୍ଦର୍ଯ୍ୟ ଚେତନା ସହିତ ସତ୍ୟ ଓ ଶିବର ମଧୁର ସମନ୍ୱୟ ସହଜ ଲକ୍ଷ୍ୟଣୀୟ । ତାଙ୍କ ପ୍ରାଣର ସୌମ୍ୟ ସ୍ନିଗ୍ଧ ସୌନ୍ଦର୍ଯ୍ୟ କଳ୍ପନାର ବିଳାସଭୂମିରେ ପ୍ରବନ୍ଧଗୁଡ଼ିକ ସତତ ଧାବମାନ । ପ୍ରାବନ୍ଧିକଙ୍କ ଲେଖାରେ ଚିର ସୌନ୍ଦର୍ଯ୍ୟମୟୀ ବିଶ୍ୱ ପ୍ରକୃତିର ବୈଚିତ୍ର୍ୟ ବର୍ଣ୍ଣନା ପାଠକକୁ ବିମୋହିତ କରେ । ପଢ଼ିଲା ମାତ୍ରେ ଏହା ପାଠକର ଅନ୍ତରକୁ ସଂଚରିଯାଏ ।

---

୯ । ଓଡ଼ିଶା ଧର୍ମ ଓ ସଂସ୍କୃତି—ଉତ୍କଳର ମାୟାଧର ମାନସିଂହ ସ୍ମାରକୀ ବକ୍ତୃତା ମାଳା—ସମ୍ପାଦନା ଚିତ୍ତରଞ୍ଜନ ଦାସ ଓଡ଼ିଆ ସଂସ୍କୃତିର ଅତୀତ ଓ ବର୍ତ୍ତମାନ—ପୃଷ୍ଠା ୨୫

୧୦ । ଚନ୍ଦ୍ରଶେଖର ରଥ—ଦୃଷ୍ଟି ଓ ଦର୍ଶନ (୧୯୭୧) ପୃଷ୍ଠା-୮୨

ଦେଖନ୍ତୁ ଏଠାରେ ପ୍ରାବନ୍ଧିକଙ୍କ ଅପରୂପ ସୌନ୍ଦର୍ଯ୍ୟର ଋତୁ ଫଗୁଣର ବର୍ଣ୍ଣନା, "ଫଗୁଣ ଜନ୍ମ ଫୁଲର ମହକ ପରି ଉଭେଇଯାଏ । ସେ ଆସିଛି ବୋଲି ଅନୁଭବ କରୁ କରୁ ଗ୍ଳଲିଯାଇଥାଏ । ସେ ଗୋଟିଏ ସମ୍ଭୋଗବନ୍ଧ ମାତ୍ର । କିନ୍ତୁ ଆଗରେ ମଧୁର ସ୍ପର୍ଶ ପରି ସେ ଗୋଟାଏ କମ୍ପିଆ ହାଓ୍ଵା । ଦେହରେ ବାଜିଲେ ସବୁ କଢ଼ ଶିହରିଉଠନ୍ତି । ସବୁ ପାଖୁଡ଼ା ମେଲି ଯାଆନ୍ତି । ଫଗୁଣ ହିଁ ଆଦ୍ୟ ଯୌବନର ସ୍ପର୍ଶ, ନୂତନ ପ୍ରଣୟର ମାଦକତା, ସୃଜନମନ୍ତ୍ରର ଆଦ୍ୟ ସ୍ଵର । ସେ ସଂଜ୍ଞାହୃତ କରେ, ଉଦ୍‌ଜ୍ଞୀବିତ କରେ, ଅନ୍ତରଙ୍ଗ ଘାଲେଇ ଶୋଇ ଯାଉଥିବା ଜଡ଼ଧର୍ମକୁ ଉଲ୍ଲଙ୍ଘନ କରି ପ୍ରାଣ ସ୍ପନ୍ଦନର ପ୍ରତିଷ୍ଠା କରେ । ଏଣୁ ସେ ଅସ୍ଥିର କରେ, ଉଚ୍ଚାଟ ସୃଷ୍ଟି କରେ, ବିଭ୍ରାନ୍ତ ହୋଇଯିବାରେ ଅଦ୍ଭୁତ ବିଳାସର ଆନନ୍ଦ ଆଣିଦିଏ । ଏ ସ୍ଵାଚ୍ଛନ୍ଦ୍ୟହୀନ ଯୌବନର ନିଶାରେ ଗୋଠ ମାତି ଉଠନ୍ତି, ଖଣ୍ଡିଆ ମଧ୍ୟ ମାତିଯାଏ । ଫଗୁଣ ଏକ ଛନ୍ଦ୍ୟମନା, ଗୋଟାଏ ଉତ୍ତାପ, ଗୋଟାଏ ତରଳ ମଧୁର ଅଗ୍ନି ।" (୧୧) ଏଇଭଳି କବିସୁଲଭ ସୌନ୍ଦର୍ଯ୍ୟ କଳ୍ପନାବୋଧରେ ସେ ନିର୍ମାଣ କରିଛନ୍ତି ତାଙ୍କର ପ୍ରବନ୍ଧ ସୌଧ ।

ଗଦ୍ୟ ଲେଖକର ବୈଶିଷ୍ଟ୍ୟ ତା'ର ଶୈଳୀ ମାଧ୍ୟମରେ ହିଁ ପ୍ରକଟିତ । ସେଥିପାଇଁ ବୋଧହୁଏ ଜାଁ-ପଲ୍-ସାର୍ତ୍ର ଗଦ୍ୟର ଶୈଳୀ ଉପରେ ଗୁରୁତ୍ୱ ଆରୋପ ପୂର୍ବକ କହିଛନ୍ତି, "And to be sure, the style makes the value of the prose.But it should passed unnoticed." (୧୨) ପ୍ରାବନ୍ଧିକ ଚନ୍ଦ୍ରଶେଖର ରଥଙ୍କ କୃତିତ୍ୱ ଅନେକାଂଶରେ ତାଙ୍କର ଉଚ୍ଚ-କୋଟୀର ଗଦ୍ୟଶୈଳୀ ଉପରେ ନିର୍ଭରଶୀଳ । ସେ ପ୍ରଥାସିଦ୍ଧ ଆଙ୍ଗିକରେ ତାଙ୍କର ପ୍ରବନ୍ଧ ଲେଖିନାହାନ୍ତି । ତାଙ୍କ ପ୍ରବନ୍ଧଗୁଡ଼ିକରେ ଗଳ୍ପର ରସ୍ତ୍ରିକତା ଓ ସୁରୁଚି, ପ୍ରବନ୍ଧ ଲେଖକର ଚିନ୍ତାଧାରା ଓ ବୌଦ୍ଧିକତା, ନାଟକୀୟ ସଂଳାପ, କବିର ଆବେଗଧର୍ମିତା ଓ ଚିତ୍ରସୁଲଭ ପ୍ରକାଶଭଙ୍ଗୀ ପରିଲକ୍ଷିତ । ସେ ବକ୍ରୋକ୍ତିର ପ୍ରାଧାନ୍ୟ ସ୍ଵୀକାର କରିନାହାନ୍ତି, ସେ ପ୍ରତ୍ୟକ୍ଷବାଦୀ । ବାସ୍ତବ ଭୂମିରେ ଦଣ୍ଡାୟମାନ ହୋଇ ଗଦ୍ ଗଦ୍ କଣ୍ଠରେ ଅତି ଆବେଗପୂର୍ଣ୍ଣ ଭାଷାରେ ସେ ପ୍ରତ୍ୟକ୍ଷ ଭାଷଣ ଦେବାରେ ଧୂରନ୍ଧର ।

---

୧୧ । ଚନ୍ଦ୍ରଶେଖର ରଥ—ଏ ଯେଉଁ ପୃଥିବୀ (୧୯୬୫) ଫଗୁଣ ପୃଷ୍ଠା-୧୪-୧୫

୧୨ । Jean-Paul Sartre—'What is Literature ? translated by Bernard Frechtman Methuen & Co Ltd. (1983) page-15

ତାଙ୍କର ଏ ଧରଣର ଶୈଳୀକୁ ସାହିତ୍ୟର ଏକ ନିର୍ଦ୍ଦିଷ୍ଟ ଆଙ୍ଗିକରେ ଅନ୍ତର୍ଭୁକ୍ତ କରି ହେବନାହିଁ। ଏଣୁ ତାଙ୍କ ପ୍ରବନ୍ଧଗୁଡ଼ିକୁ ଖୋଲାରୂପ (open form) ଆଙ୍ଗିକର ପର୍ଯ୍ୟାୟଭୁକ୍ତ କରିବା ଠିକ୍ ହେବ। ସମ୍ପ୍ରତି ମାର୍କିନ ସାହିତ୍ୟରେ Alfred Kazin ଏ ଧରଣର ଲେଖାକୁ ଖୋଲାରୂପ (open form) ପର୍ଯ୍ୟାୟଭୁକ୍ତ କରିଛନ୍ତି। ଚନ୍ଦ୍ରଶେଖର ରଥ ନିଜ ଶୈଳୀ ସମ୍ପର୍କରେ ଏହି ଖୋଲା ରୂପ (open form) ଆଙ୍ଗିକକୁ ଗ୍ରହଣ କରି ନେଇଛନ୍ତି। ଏ ସମ୍ପର୍କରେ ସେ କହନ୍ତି; "ବାନ୍ଧଛନ୍ଦ ହେବା ଗୋଟାଏ ଅସ୍ୱସ୍ତିକର ଅବସ୍ଥା। ଏଣୁ ସମସ୍ତ ବର୍ଗୀକରଣକୁ ଭୁଲିଯାଇ ଏବେ ଇଂରାଜୀରେ ଗୋଟାଏ 'ଖୋଲାରୂପ' ସୃଷ୍ଟି ହୋଇ ଗଲାଣି। ତାକୁ ସେମାନେ 'Open from' ବୋଲି କହନ୍ତି। ଏଇଟା ସାହିତ୍ୟିକ ସ୍ୱେଚ୍ଛାଚାର ନୁହେଁ ବା ଉଦ୍ଦେଶ୍ୟହୀନ ବିଦ୍ରୋହ ମଧ୍ୟ ନୁହେଁ। କୌଣସି ଗୋଟିଏ ବର୍ଗରେ ଆବଦ୍ଧ ନ ରହି ଆଉ ଟିକିଏ ବିସ୍ତୃତ ହୋଇଗଲେ, ଟିକିଏ ସ୍ୱାଧୀନ ହୋଇଗଲେ, ଦେଖା ଯାଉଛି ଯେ କ୍ଷୁଦ୍ରଗଳ୍ପ ଓ ପ୍ରବନ୍ଧ ମିଶିଯାଇ ବେଶ୍ ଗୋଟିଏ ନୂଆ ପ୍ରଦେଶ ଗଠନ କରି ପାରୁଛନ୍ତି। ସେଥିରେ ନାଟକ ପରି ବାଧ୍ୟବାଧକତା ନାହିଁ ବା କବିତା ପରି କଟକଣା ନାହିଁ। ସମସ୍ତଙ୍କୁ ଭିଡ଼ି ଆଣି ଜବରଦସ୍ତି କାଠବାଡ଼ ପରି ବାନ୍ଧିବାର ପ୍ରୟାସ ଏଥିରେ ନାହିଁ। ସମସ୍ତଙ୍କର ସ୍ୱତନ୍ତ୍ର ମୂଳ ରକ୍ଷା କରି କେବଳ ଛନ୍ଦାଛନ୍ଦି ଶାଖା ପତ୍ରରେ ଗୋଟିଏ ସବୁଜ ଉପନିବେଶ ମଧ୍ୟ ଏହା ନୁହେଁ। ଏଇଟା ବରଂ ମଞ୍ଜି ମଞ୍ଜି ମିଶି, ବର୍ଣ୍ଣ ରୂପ ମିଶି ନୂଆ ଗୋଟାଏ ଉଦ୍ଭିଦ। ତା'ର ଚେର ଭୂଇଁ ଛୁଇଁ ଗଲାଣି। ତା'ର କେବଳ ନାମକରଣ ହେବା ବାକି ଅଛି, ନିୟମିତ ବର୍ଗୀକରଣ ହେବା ବାକୀ ଅଛି।" (୧୩) ପ୍ରାବନ୍ଧିକଙ୍କ ଖୋଲା ରୂପ ଆଙ୍ଗିକ ଓଡ଼ିଆ ସାହିତ୍ୟରେ ଅଭିନବ ମନେହେଲେ ମଧ୍ୟ ଏହା ଲେଖକ ସହିତ ପାଠକର ଅପୂର୍ବ ଯୋଗାଯୋଗ ରଖି ପାରିଛି।

ଚନ୍ଦ୍ରଶେଖର ରଥଙ୍କ ପ୍ରବନ୍ଧଗୁଡ଼ିକର ଆରମ୍ଭ ଏପରି ଭାବରେ ହୋଇଥାଏ ଓ ଶେଷ ଏପରି ଭାବରେ ହୋଇଥାଏ, ଯାହାକୁ ପାଠକ ପଢ଼ିବା ମାତ୍ରେ ଆପେ ଆପେ ତା' ସହିତ ଶେଷ ପର୍ଯ୍ୟନ୍ତ ବାନ୍ଧି ହୋଇଯାଏ। ଏହି ଶକ୍ତି ପ୍ରତ୍ୟେକ ଉଚ୍ଚକୋଟୀର ପ୍ରାବନ୍ଧିକଠାରେ ପରିଲକ୍ଷିତ ହୁଏ। ଏ ସମ୍ପର୍କରେ Virginia Woolf କହନ୍ତି, "Every thing in an essay must be subdued to that end. It should lay us under a spell with its first word, and we should only wake,

---

୧୩। ଚନ୍ଦ୍ରଶେଖର ରଥ—ଦୃଷ୍ଟି ଓ ଦର୍ଶନ (୧୯୭୧)—ପୂର୍ବାଭାସ

refreshed with its last,'' (୧୪) ସେ ଅତି ତାତ୍ପର୍ଯ୍ୟପୂର୍ଣ୍ଣଭାବେ ତାଙ୍କ ପ୍ରବନ୍ଧର ଆରମ୍ଭ କରିଥାନ୍ତି, ଯାହା ପଢ଼ିଲେ ପାଠକ ମନରେ ଅଧିକ ଅଗ୍ରସର ହେବା ପାଇଁ ଉତ୍କଣ୍ଠା ସୃଷ୍ଟି ହୁଏ । ତାଙ୍କ ପ୍ରବନ୍ଧର ଆରମ୍ଭରୁ ସେ ପାଠକକୁ ନିଜର ଭାବ ସହିତ ଏକାକାର କରି ଭସାଇ ନେଇ ପାରନ୍ତି । ଏଠାରେ ଦେଖନ୍ତୁ ତାଙ୍କର 'ଚୂଡ଼ାମଣି ପ୍ରସଙ୍ଗ' ପ୍ରବନ୍ଧର ଆରମ୍ଭ;''ବିଦ୍ୟାବତୀ ଆଗରେ ମୂର୍ଖ କାଳିଦାସର ମୂକଭଙ୍ଗୀକୁ ଯେମିତି ପଂଡ଼ାଏ ପଣ୍ଡିତ ମିଶି ବିବିଧ ତାତ୍ତ୍ୱିକ ଅର୍ଥରେ ରଞ୍ଜିତ କରିଦେଲେ, ସେହିପରି ମେଞ୍ଚାଏ ପିଲାଳିଆ ଆବୁରୁଜାବୁରୁ ଗାରକୁ ମଧ୍ୟ ଗମ୍ଭୀର ତାତ୍ପର୍ଯ୍ୟପୂର୍ଣ୍ଣ ବୋଲି ପ୍ରମାଣ କରି ଦିଆଯାଇପାରେ । ଅକସ୍ମାତ୍ ସେଥିରେ ଟିକିଏ ସରଳ ରେଖା ଯଦି ଥାଏ; ତେବେ ତାହାହିଁ ହେବ ସତ୍ୟ ଓ ଧର୍ମର ପ୍ରତୀକ, କଳାକାରର ସରଳତା, ତୀକ୍ଷ୍ଣତା ଏବଂ ଅବିଚଳିତ ସାଧନାର ଇଙ୍ଗିତ !—ତାହା ପୁଣି 'କ୍ଷୁରସ୍ୟ ଧାରା ନିଶିତ ଦୁରତ୍ୟୟା' !!—ଯଦି ବଙ୍କା ହୋଇଥାଏ ତେବେ ତାହାହିଁ ପ୍ରକୃତିର ସ୍ୱରୂପ ! ନାରୀଭାବରେ ରୂପକଳ୍ପ । ଯଦି କୁଞ୍ଚିକୁଞ୍ଚିଆ ହୋଇଥାଏ ତା' ହେଲେ ତ ସେଥିରେ ଜୀବନର ମହାପ୍ରବାହ ଆସିଗଲା । ଜୀଳନଦୀ ସେହିଠାରେ ହିଁ ଆତ୍ମପ୍ରକାଶ କରିଛୁ ବୋଲି ବୁଝିବାକୁ ହେବ । ହେଠି ଇଚ୍ଛା କଲେ ଦଶିବ କାମିନୀର ଚୂର୍ଣ୍ଣ କୁନ୍ତଳ, ବିନ୍ଧ୍ୟଧାମର ଝଲକ, ତଟିନୀର ପ୍ରବାହ, ସଂସାରର ଜଟିଳ ଧାରା, ଏପରି କେତେ କଣ । ଯଦି ଲମ୍ବାକିଆ ଆଙ୍କୁପରି କିଛି ଗୋଟିଏ ସେଥିରୁ ବାହାରି ହୋଇଗଲା, ତେବେ ଜାଣିବାକୁ ହେବ ଯେ କଳାକାର ସେଥିରେ ସମଗ୍ର ସୃଷ୍ଟିତତ୍ତ୍ୱ କହିଦେଲେ; କିନ୍ତୁ ଖଡ଼ି ବୁଲୁବୁଲୁ ଯଦି ଅକସ୍ମାତ୍ 'ଠ' ମୁଣ୍ଡାଳି ଧରିଯାଇଛି, ତେବେ ଆଉ କହିବାର ନାହିଁ । ସମସ୍ତ ଶାସ୍ତ୍ର ସେଥିରେ ମୁଖର ହୋଇ ବାଜି ଉଠିବ— ଜ୍ୟୋତି, ଶୂନ୍ୟ, ସୁଦର୍ଶନ, ନୀଳଚକ୍ର, କାଳଚକ୍ର ସବୁ ଯେମିତି ଏକାଠି ସେଇ ମଣ୍ଡଳରେ ସମାହିତ ହୋଇଛନ୍ତି ।'' (୧୫) ଏସବୁ ଗଦ୍ୟ ଯେଭଳି ବିଶ୍ଳେଷଣ-ଧର୍ମୀ, ସେହିପରି ଆବେଗଦୀପ୍ତ ।

ଚନ୍ଦ୍ରଶେଖର ରଥଙ୍କ ଗଦ୍ୟର ବୈଶିଷ୍ଟ୍ୟ ତାଙ୍କର ଚିନ୍ତାଧର୍ମୀ ପ୍ରକାଶଭଙ୍ଗୀ ଓ ଶବ୍ଦର ସାର୍ଥକ ପ୍ରୟୋଗ ଉପରେ ନିର୍ଭର କରେ । ସେ ତାଙ୍କର ଅନୁଭୂତିକୁ ଚିନ୍ତାଟିଏ ଦେଇ ପ୍ରକାଶ କରିବାରେ ପାରଙ୍ଗମ । ସେ ଏପରିଭାବରେ ଶବ୍ଦମାନଙ୍କୁ ଅର୍ଥପୂର୍ଣ୍ଣ କରି ତାଙ୍କ ପ୍ରବନ୍ଧରେ ଟେକି ଦେଇଥାନ୍ତି, ଯାହା ପାଠକଲେ ହୃଦୟରେ

---

୧୪ । Virginia Woolf—'The Modern Essay'—Collected Essays (Ist Edition) vol-2 page-41

୧୫ । ଚନ୍ଦ୍ରଶେଖର ରଥ—ଦୃଷ୍ଟି ଓ ଦର୍ଶନ ୧୯୭୧ -ଚୂଡ଼ାମଣି ପ୍ରସଙ୍ଗ-ପୃଷ୍ଠା-୫

ଭାବଟି ଛବି ପରି ଆମ ଆଗରେ ଉପସ୍ଥିତ ହୁଏ । ଦାର୍ଶନିକ ଭାବସମ୍ବଳିତ ଜୀବନ-ଧର୍ମୀ କଷ୍ଟସାଧ୍ୟ ବିଷୟକୁ ଚିତ୍ରଟିଏ ଆଙ୍କି ଥୋଇବାରେ ପ୍ରାବନ୍ଧିକଙ୍କ ସ୍ୱକୀୟତା ତାଙ୍କ ପ୍ରବନ୍ଧ ମାନଙ୍କରେ ଯତ୍ର ଲକ୍ଷ୍ୟଣୀୟ । ଏଠାରେ 'ମଥୁରା ନଗରୀ' ପ୍ରବନ୍ଧରୁ କିୟଦଂଶ ଉଦ୍ଧାର କରାଯାଉ । "କଳସ ଝଡ଼ିପଡ଼ିଥିବା କୋଣାର୍କ ପରି ବଞ୍ଚିବା ଏକ ବିଡ଼ମ୍ବନା; କିନ୍ତୁ ସ୍ମୃତିଭିତ୍ତିକ ସେଇ ପାଷାଣ ପରି ଏହା ମଧ୍ୟ ସତ୍ୟ । ଆକାଶ ଗର୍ଭରେ ଭାସମାନ ବଳଦମଖ ପରି ଜୀବନର ମୂଲ୍ୟ ଆସନ୍ତି ଏବଂ ଯାଆନ୍ତି । ଭାଦ୍ରବର ଘୋର ବର୍ଷା ରାତିରେ ଯମୁନା ପାରି ହୋଇ ଆସନ୍ତି ଓ ଏହିପରି ଯାଆନ୍ତି । ଆମ ପାଇଁ ସେମାନଙ୍କର ଆବିର୍ଭାବ ଯେପରି ଅଯାଚିତ, ତିରୋଭାବ ସେହିପରି ଅଣାୟତ୍ତ । ଯେ ଆସେ ସେ ଯିବା ପାଇଁ ହିଁ ଆସେ । ଆସିବା ଯିବା ମଧ୍ୟରେ ସ୍ୱଳ୍ପ ଭିତ୍ତି କେତୋଟି ମମତାରି ବିନ୍ଦୁ ମାତ୍ର ଟଳ ଟଳ ହେଉଥାଏ । ସେଗୁଡ଼ିକୁ ଘେରି ଅଜସ୍ର ଲୋତକର ମୁକ୍ତା ବିନ୍ଦୁ । ଉଦ୍ଭିଦ ପରି ଯେଉଁମାନେ ନୂତନ ପ୍ରସ୍ତାଧରେ ବାର୍ଷିକ ଫସଲ ପାଇଁ ପ୍ରସ୍ତୁତ ରହିଥାନ୍ତି, ଅତଏ ଶକ୍ତ ହେଲେ ଯେଉଁମାନଙ୍କର ସମ୍ଭାବନା ସରି ଯାଇଥାଏ, ସେମାନଙ୍କ କଥା ନଆସୁ ।" (୧୬) ଜୀବନର ଚିତ୍ରଠାରୁ ଆରମ୍ଭ କରି କଳ୍ପନାରେ ବିଶ୍ୱର ଚିତ୍ର ଆଙ୍କିବାରେ ସେ ଜଣେ ପାରଦର୍ଶୀ ଦ୍ରଷ୍ଟା । ଅନେକତ୍ର ସେ ତାଙ୍କ ପ୍ରବନ୍ଧରେ ଏପରି ଚିତ୍ରଧର୍ମୀ ଭାଷା ବ୍ୟବହାର କରିଛନ୍ତି, ଯାହାକୁ ଗଦ୍ୟଧର୍ମୀ କବିତା କୁହାଯାଇ ପାରିବ ।

ପ୍ରବନ୍ଧ ଲେଖି ସାହିତ୍ୟିକ ଭାବରେ ଯଶ ଅର୍ଜନ କରିବା ଏକ ଅସାଧ୍ୟ ସାଧନା । କାରଣ ଏ ବିଭାଗ ପ୍ରତି ଅଧିକାଂଶ କେତାଣି ପାଠକ ଅନେକାଂଶରେ ବିମୁଖ । ଚନ୍ଦ୍ରଶେଖର ରଥ ଏହାର ଏକ ବ୍ୟତିକ୍ରମ । ସେ ଜଣେ ପ୍ରାବନ୍ଧିକ ଭାବେ ଆଜି ଅଗଣିତ ଓଡ଼ିଆ ପାଠକର ପ୍ରିୟଭାଜନ ହୋଇ ପାରିଛନ୍ତି । ଜଣେ ସତ୍ୟ-ଦ୍ରଷ୍ଟା ଋଷି ପରି ସେ ଜୀବନର ବିସ୍ତୀର୍ଣ୍ଣ ଭୂମିରେ ବିଚରଣ କରିଛନ୍ତି ଓ ଜଗତକୁ ସେ ତାଙ୍କର ଦିବ୍ୟଦୃଷ୍ଟିରେ ଦେଖିଛନ୍ତି । ସତ୍ୟଦ୍ରଷ୍ଟା ଏଇ ଋଷି ତାଙ୍କର ପ୍ରବନ୍ଧ ମାନଙ୍କରେ ବିପୁଳା ପୃଥ୍ୱୀ ପରିକ୍ରମା କରିଛନ୍ତି । ତାଙ୍କ ପ୍ରବନ୍ଧ ପାଠକର ପ୍ରାଣକୁ ବିମୋହିତ କରେ, ବୃହତ୍ତର ଜୀବନାଭିମୁଖୀ କରେ ଓ ଅଶ୍ରୁ ମଧ୍ୟରେ ପୁଲକ ସଞ୍ଚାର କରେ । ତାଙ୍କୁ ସମକାଳୀନ ଓଡ଼ିଆ ପ୍ରବନ୍ଧ ସାହିତ୍ୟର 'କାର୍ତ୍ତିପୁରୁଷ' କୁହାଯାଇପାରେ ।



---

୧୬ । ଚନ୍ଦ୍ରଶେଖର ରଥ—ଏ ଯେଉଁ ପୃଥିବୀ-୧୯୬୫-ମଥୁରାନଗରୀ-ପୃଷ୍ଠା-୧୦-୧୧

# ସମସାମୟିକ ଭାରତୀୟ ଉପନ୍ୟାସରେ ପଦ୍ମମାଳୀର ସ୍ଥାନ

ଭାରତୀୟ ସାହିତ୍ୟରେ 'ଉପନ୍ୟାସ' ପାଶ୍ଚାତ୍ୟ ସାହିତ୍ୟ ପ୍ରଭାବର ନିଦର୍ଶନ । ଏକ ପରମ୍ପରାହୀନ ସୃଷ୍ଟି ରୂପେ ଏହାର ଆବିର୍ଭାବ ଅପ୍ରତ୍ୟାଶିତ । କେବଳ ଭାରତ କାହିଁକି, ବିଶ୍ୱର କୌଣସି ଦେଶର ପୁରାତନ ସାହିତ୍ୟରେ ଉପନ୍ୟାସ ରଚନାର ନମୁନା ଦେଖିବାକୁ ମିଳେନାହିଁ । ଅଷ୍ଟାଦଶ ଶତକର ଆଦପାଦରେ ଏହାର ଜନ୍ମ । ଏହା ଭାରତୀୟ ସାହିତ୍ୟରେ ଊନବିଂଶ ଶତକରେ ନିଜର ଆତ୍ମପରିଚୟ ଦେଇଛି । ମଣିଷର ଜୀବନକୁ ନେଇ ଉପନ୍ୟାସମାନ ଗଢ଼ି ଉଠିଛି । ସାମାଜିକ ପରିବେଷ୍ଟନୀରୁ ମଣିଷର ମୁକ୍ତି ଓ ବ୍ୟକ୍ତି ସ୍ୱାଧୀନତା ଅନେକ ଉପନ୍ୟାସରେ ପ୍ରକାଶିତ । ଔପନ୍ୟାସିକ ପକ୍ଷେ ଜୀବନର ଜଟିଳ ରହସ୍ୟ ସନ୍ଧାନ ବଡ଼କଥା । ସେଥିପାଇଁ ସେ ଇତିହାସ, ବୈଦିକ ପରମ୍ପରା ଭିତରେ ଜୀବନର ଚିରନ୍ତନ ସ୍ରୋତ ସନ୍ଧାନ କରିବାକୁ କୁଣ୍ଠିତ ନୁହେଁ । ସେଥିପାଇଁ ଉପନ୍ୟାସ ଜୀବନ ପରି ଅସୀମ ଓ ବ୍ୟାପକ ।

ଊନବିଂଶ ଶତାବ୍ଦୀ ଭାରତୀୟ ଶିକ୍ଷା, ସଂସ୍କୃତି ଓ ସାହିତ୍ୟର ଇତିହାସରେ ଅତୀବ ଗୁରୁତ୍ୱପୂର୍ଣ୍ଣ । ଇଂରେଜମାନେ ଏ ଦେଶକୁ ଆସିବା ସହିତ ଏଠାରେ ପାଶ୍ଚାତ୍ୟ ଶିକ୍ଷାର ପ୍ରବର୍ତ୍ତନ ପାଇଁ ଉଦ୍ୟମ କରିଥିଲେ । ଭାରତରେ ପାଶ୍ଚାତ୍ୟ ଶିକ୍ଷାକୁ ରାଜା ରାମମୋହନ ରାୟଙ୍କ ପରି ବଶିଷ୍ଟ ସମାଜସଂସ୍କାରକମାନେ ସ୍ୱାଗତ କରିଥିଲେ । ପାଶ୍ଚାତ୍ୟ ଶିକ୍ଷାର ପ୍ରଚଳନ ଫଳରେ ଭାରତୀୟମାନଙ୍କ ସାମାଜିକ ଜୀବନରେ ପରିବର୍ତ୍ତନର ସୂତ୍ରପାତ ହୋଇଥିଲା । ମିଶନାରୀମାନଙ୍କ ଆଗମନ ଓ ଶ୍ରୀରାମପୁରରେ କଲେଜ ପ୍ରତିଷ୍ଠା ଦ୍ୱାରା ଏ ଦେଶବାସୀଙ୍କ ମନରେ ଏକ ନବୀନ ଉଦ୍ଦୀପନା ସୃଷ୍ଟି ହୋଇଥିଲା । ଉଚ୍ଚ ଶିକ୍ଷାଲାଭ କରି ଯେଉଁ ଶିକ୍ଷିତ ଗୋଷ୍ଠୀ ଆତ୍ମପ୍ରକାଶ କରିଥିଲେ, ସେମାନେ ସାହିତ୍ୟ, ସଂସ୍କୃତି କ୍ଷେତ୍ରରେ ପ୍ରଦର୍ଶନ କଲେ ସ୍ୱକୀୟ ସ୍ୱାତନ୍ତ୍ର୍ୟ । ପ୍ରାଚୀନ ପରମ୍ପରାରେ, ପ୍ରାଥମିକ ସ୍ତରରେ କାବ୍ୟ କବିତା ନ ଲେଖି, ଏହି ଶିକ୍ଷିତ ଗୋଷ୍ଠୀ ରଚନାକଲେ ଗଳ୍ପ, ଉପନ୍ୟାସ, ପ୍ରବନ୍ଧ ଓ ସମାଲୋଚନା । ପତ୍ରପତ୍ରିକା ପୃଷ୍ଠାରେ ପ୍ରଥମକରି ଏହି ଲେଖାଗୁଡ଼ିକ ପ୍ରକାଶିତ ହେଲା ଓ ପାଠକର ଆଦର ଆନୁକୂଲ୍ୟ

ଏହା ସମୟକ୍ରମେ ପୁସ୍ତକ ଆକାରରେ ରୂପଲଭ କଲା । ବିଶେଷ କରି ଭାରତୀୟ ସାହିତ୍ୟମାନଙ୍କରେ ଊନବିଂଶ ଶତକରେ ସାହିତ୍ୟର ଏସବୁ ନୂତନ ବିଭାଗଗୁଡ଼ିକରେ ଚଳିଲା ପରୀକ୍ଷା । ବଙ୍ଗଳା ସାହିତ୍ୟ ଉପନ୍ୟାସ ରଚନାରେ ଅନ୍ୟାନ୍ୟ ଭାଷାସାହିତ୍ୟ ତୁଳନାରେ ଅଗ୍ରଜ ଭୂମିକା ଗ୍ରହଣ କଲା ।

ଇଂରାଜୀ ଶିକ୍ଷା, ସଭ୍ୟତାର ଆଲୋକରେ ସମଗ୍ର ଭାରତବର୍ଷରେ ପ୍ରଥମେ ବଙ୍ଗଦେଶ ଆଲୋକିତ ହୋଇଥିଲା । କଲିକତା ମହାନଗରୀ ଥିଲା ଶିକ୍ଷା, ସଂସ୍କୃତି ଓ ସାହିତ୍ୟର ପୁଣ୍ୟପୀଠ । ଊନବିଂଶ ଶତକର ଆଦ୍ୟ ପାଦରେ ଇଂରାଜୀ ଶିକ୍ଷିତ ବାବୁମାନଙ୍କ ଆଚାର ବ୍ୟବହାର ପ୍ରଭୃତି ସାଧାରଣ ଜନତାଙ୍କ ପାଇଁ ଆଦୌ ରୁଚିକର ନଥିଲା । ଏକ ପକ୍ଷରେ ପ୍ରାଚୀନ ପରମ୍ପରା, ଅପର ପକ୍ଷରେ ନବୀନ ଚିନ୍ତାଧାରା ମଧ୍ୟରେ ଏକ ସଂଘର୍ଷ କେତେକଙ୍କ ମାନସିକ ଭାବନାକୁ କରିଥିଲା ଭାରାକ୍ରାନ୍ତ । ଏହି ମାନସିକ ଆନ୍ଦୋଳନର ପ୍ରତିରୂପ ତତ୍କାଳୀନ ବହୁ ଉପନ୍ୟାସରେ ଉତ୍କୀର୍ଣ୍ଣ । ଶିକ୍ଷିତ ବାବୁମାନେ ଇଂରାଜୀ ଶିକ୍ଷା, ସଭ୍ୟତାର ଦୋହାଇ ଦେଇ ସମାଜରେ ନାନା ପ୍ରକାରର ଅଘଟଣ ଘଟାଇବା ସହିତ ନିମ୍ନ ଶ୍ରେଣୀର ଜନସାଧାରଣଙ୍କୁ ପ୍ରତାରଣା କରୁଥିଲେ । ଏ ସବୁକୁ ବ୍ୟଙ୍ଗାତ୍ମକ ଶୈଳୀରେ ବଙ୍ଗଳାର ଅନ୍ୟତମ ଲେଖକ ପ୍ରମଥନାଥ ଶର୍ମା ଓରଫ୍ ଭବାନୀଚରଣ ମୁଖୋପାଧ୍ୟାୟ ଲେଖିଥିଲେ ତାଙ୍କର 'ନବବାବୁ ବିଳାସ' ପୁସ୍ତକରେ । ୧୮୨୩ ମସିହାରେ ପ୍ରକାଶିତ ଏହି ପୁସ୍ତକକୁ କେତେକ ବଙ୍ଗଳା ସାହିତ୍ୟର ଆଦ୍ୟ ପର୍ଯ୍ୟାୟର ଉପନ୍ୟାସର ଗୌରବ ଦେଇଥାନ୍ତି । କିନ୍ତୁ ଏ ପୁସ୍ତକଟିକୁ ଉପନ୍ୟାସ ଅପେକ୍ଷା ଏକ ବ୍ୟଙ୍ଗାତ୍ମକ ମୁକ୍ତ ଗଦ୍ୟ ରଚନା କହିବା ଅଧିକ ସମୀଚୀନ ହେବ । ପରବର୍ତ୍ତୀ ସମୟରେ ପ୍ୟାରୀଚାନ୍ଦ ମିତ୍ର ଓରଫ୍ ଟେକଚାନ୍ଦ ଠାକୁର ସମକାଳୀନ ସାମାଜିକ ଜୀବନକୁ ଭିତ୍ତି କରି ୧୮୫୮ ମସିହାରେ ରଚନା କଲେ ବଙ୍ଗଳା ସାହିତ୍ୟର ପ୍ରଥମ ଉପନ୍ୟାସ 'ଆଲାଲେର ଘରେର ଦୁଲାଲ' । ଏହି ଉପନ୍ୟାସଟି ବଙ୍ଗଳା ଭାଷା କାହିଁକି, ସମଗ୍ର ଭାରତରେ ପ୍ରାଦେଶିକ ଭାଷାମାନଙ୍କରେ ପ୍ରକାଶିତ ପ୍ରଥମ ଉପନ୍ୟାସ । ଏହି ଉପନ୍ୟାସ ସମ୍ପର୍କରେ ପ୍ରଶଂସାପୂର୍ଣ୍ଣ ମନ୍ତବ୍ୟ ଦେଇ L. S. S. O'Malley କହନ୍ତି "A lead in the revolt against the Sanskritized style was given by Piari Chand Mitra (1814-83), who wrote under the nom-deplume of Tekchand Thakur and in 1858 published a novel called 'Allaler Gharer Dulal,' which has been held to be comparable with the works of Fielding and Moliere. It eschewed the pedantic

language which was regarded as the cachet o good writing and aimed at simplicity of diction."(୧) ପ୍ୟାରୀଚାନ୍ଦ ସାଧାରଣ ସମସ୍ୟାକୁ ନେଇ ଉପନ୍ୟାସରେ ଯେଉଁ ଧାରାକୁ ଗୁରୁତ୍ୱ ଦେଲେ, ତାହାକୁ ବଙ୍କିମଚନ୍ଦ୍ର ସୁନ୍ଦର ରୂପେ ନିଜର ଉପନ୍ୟାସରେ ବ୍ୟକ୍ତ କଲେ । ଆର୍ଥିକ, ଚରିତ୍ର ଚିତ୍ରଣ, ସାମାଜିକ ସମସ୍ୟାର ବିଶ୍ଳେଷଣ ଦିଗରେ ବଙ୍କିମଚନ୍ଦ୍ର ବଙ୍ଗଳା ଉପନ୍ୟାସ ସାହିତ୍ୟରେ ଦେଲେ ନିଜର ଅନନ୍ୟସାଧାରଣ କୃତିତ୍ୱର ପରିଚୟ । ତାଙ୍କର 'ଦୁର୍ଗେଶ ନନ୍ଦିନୀ' (୧୮୬୫), 'କପାଳ କୁଣ୍ଡଳା' (୧୮୬୬), 'ମୃଣାଳିନୀ' (୧୮୬୯), 'ବିଷବୃକ୍ଷ' (୧୮୭ ) କୃଷ୍ଣକାନ୍ତେର ଉଇଲ' (୧୮୭୮), 'ଦେବୀ ଚଉଧୁରାଣୀ' (୧୮୮୪),'ସୀତାରାମ'(୧୮୮୭), ପ୍ରଭୃତି ଉପନ୍ୟାସରେ ସଂସ୍କାର ପ୍ରସୂତ ମନୋବୃତ୍ତି, ଐତିହ୍ୟଚେତନା, ଆଧ୍ୟାତ୍ମିକ ଅବବୋଧ, ଜାତୀୟ ଆନ୍ଦୋଳନର 'ବନ୍ଦେ ମାତରମ୍' ଧ୍ୱନି, ବିଶେଷ ସଫଳରୂପ ନେଇଛି । ସମାଜର ନିମ୍ନ ଶ୍ରେଣୀ ପ୍ରତି ସହାନୁଭୂତି ମୂଳକ ଅନୁକମ୍ପା ଦେଖାଇବାରେ ତାଙ୍କର ପ୍ରବଳ ଶ୍ରଦ୍ଧା ପରିଲକ୍ଷିତ । ବଙ୍କିମଚନ୍ଦ୍ରଙ୍କ ଲେଖନୀରେ ବଙ୍ଗଳା ଉପନ୍ୟାସ ହେଲା ବହୁ ଜନାଦୃତ । ଊନବିଂଶ ଶତକରେ ବଙ୍ଗଳାର ଅନ୍ୟତମ ବିଶିଷ୍ଟ ଔପନ୍ୟାସିକ ଭାବରେ ରମେଶଚନ୍ଦ୍ର ଦତ୍ତଙ୍କ ନାମ ଉଲ୍ଲେଖଯୋଗ୍ୟ । ସେ ଅତୀତ ବିଭବ କାହାଣୀକୁ ଉପନ୍ୟାସରେ ରୂପ ଦେଇ ଯେଉଁ ଜାତୀୟତାବୋଧର ଦୃଷ୍ଟାନ୍ତ ଦେଖାଇଯାଇଛନ୍ତି, ତାହା ବାସ୍ତବରେ ଅଭିନନ୍ଦନୀୟ । ତାଙ୍କର 'ବଙ୍ଗ ବିଜେତା' (୧୮୭୪) 'ମାଧବୀ କଙ୍କଣ' (୧୮୭୭), 'ମହାରାଷ୍ଟ୍ର ଜୀବନ ପ୍ରଭାତ' (୧୮୭୮), 'ରାଜପୁତ୍ର ଜୀବନ ସନ୍ଧ୍ୟା' (୧୮୭୯) ପ୍ରଭୃତି ଉପନ୍ୟାସରେ ଜାତି ପ୍ରତି ଗଭୀର ମମତା, ବିପ୍ଳବୀ ମନୋଭାବ ଓ ଅତୀତ ପ୍ରତି ଅଜସ୍ର ମୋହ ଲକ୍ଷଣୀୟ । ସେ ବଙ୍ଗଳାର ପଲ୍ଲୀ ଜୀବନ-ଚର୍ଯ୍ୟାକୁ ନେଇ 'ସଂସାର' (୧୮୮୬), 'ସମାଜ' (୧୮୯୩) ନାମରେ ଲେଖିଛନ୍ତି ଦୁଇଟି ସାମାଜିକ ଉପନ୍ୟାସ । ବିଧବାମାନଙ୍କ ସମସ୍ୟା, ଛୁଆଁ ଅଛୁଆଁ ଭେଦଭାବର ପ୍ରାଚୀର ଲଙ୍ଘନ କରି ଏକ ସୁନ୍ଦର ବାସ୍ତବବାଦୀ ସମାଜ ଗଠନର ପରିକଳ୍ପନା ତାଙ୍କର ଏହି ଦୁଇଟି ଉପନ୍ୟାସରେ ପ୍ରକାଶିତ । ଏମାନଙ୍କ ବ୍ୟତୀତ ଊନବିଂଶ ଶତକରେ ବଙ୍ଗଳା ଉପନ୍ୟାସ ସାହିତ୍ୟରେ ଲାଲ ବିହାରୀ ଦେ, ପ୍ରଭାତ କୁମାର ମୁଖୋପାଧ୍ୟାୟ ନିଜର ପଦଚିହ୍ନ ରଖିଯାଇଛନ୍ତି ; କିନ୍ତୁ ବଙ୍କିମଚନ୍ଦ୍ରଙ୍କ ପରି

---

(୧) History of Bengal Bihar & Orissa under British Rule—(1925) L. S.S. O' Malley, Calcutta, Bengal Secretariate Book Depot. Page-738-739.

ପ୍ରତିଭାଶାଳୀ ଔପନ୍ୟାସିକଙ୍କ ପ୍ରଚଣ୍ଡ ଜ୍ୟୋତିରେ ଅନ୍ୟମାନେ ନିଷ୍ପ୍ରଭ ହୋଇଯାଇ କେବଳ ସାହିତ୍ୟ ଇତିହାସର ସାମଗ୍ରୀ ରୂପେ ବଞ୍ଚିଛନ୍ତି କହିଲେ ଯଥାର୍ଥ ହେବ ।

ଊନବିଂଶ ଶତକରେ ଭାରତର ଅନ୍ୟାନ୍ୟ ଭାଷାମାନଙ୍କରେ ମଧ୍ୟ କେତେ-ଗୁଡ଼ିଏ ଉପନ୍ୟାସ ରଚିତ ହୋଇଥିଲା । ତେଲୁଗୁ ଭାଷାରେ ୧୮୭୮ ମସିହାରେ ପ୍ରକାଶିତ ହୋଇଥିଲା ବୀରେଶଲିଙ୍ଗମ୍‌ଙ୍କ 'ରାଜଶେଖର ଚରିତମ୍' । ଏହି ଉପନ୍ୟାସଟି ଆନ୍ଧ୍ର ସମାଜର ସାମାଜିକ ପୃଷ୍ଠଭୂମି ଉପରେ ରଚିତ ହୋଇଥିଲେ ମଧ୍ୟ, ଏଥିରେ ଇଂରେଜୀ ଉପନ୍ୟାସ 'ଭିକାର ଅଫ୍ ୱେକ୍‌ଫିଲଡ୍'ର ପ୍ରଭାବ ଅନୁମିତ ହୁଏ । ତାମିଲ ସାହିତ୍ୟରେ ପ୍ରଥମ ଉପନ୍ୟାସ ହେଉଛି ବେଦ ନାୟକ ପିଲାଇଙ୍କର ଲିଖିତ 'ପ୍ରତାପ ମୁଦାଲିୟର ଚରିତ୍ରମ' । ଏହି ଉପନ୍ୟାସଟି ୧୮୭୯ ମସିହାରେ ପ୍ରକାଶିତ । ୧୮୭୭ ମସିହାରେ ସେ 'ସୁଗୁଣ ସୁନ୍ଦରୀ' ନାମରେ ଆଉ ଏକ ଉପନ୍ୟାସ ରଚନା କରିଥିଲେ । ମରାଠୀ ଭାଷାରେ ଉପନ୍ୟାସ ରଚନାର ଶୁଭାରମ୍ଭ ହୋଇଛି ୧୮୫୭ ମସିହାରେ । ବାବା ତାନ୍ମାଦଙ୍କ ବିରଚିତ 'ଯମୁନା ପର୍ଯ୍ୟଟନ' ହେଉଛି ଏହି ଭାଷାର ପ୍ରଥମ ଉପନ୍ୟାସ । ବିଧବାମାନଙ୍କ ସାମାଜିକ ସମସ୍ୟାର ଆଧାରରେ ଏହା ରଚିତ । ପରବର୍ତ୍ତୀ କାଳରେ ୧୮୭୧ ମସିହାରେ ଗୁଞ୍ଜିକର 'ମଚ୍ଛନ୍‌ଗଡ଼' ନାମରେ ଏକ ଐତିହାସିକ ଉପନ୍ୟାସ ରଚନା କରିଥିଲେ । ପ୍ରକୃତ ପକ୍ଷେ ମରାଠୀ ଉପନ୍ୟାସ ରଚନାରେ ହରିନାରାୟଣ ଆପେ ଜଣେ ସଫଳ ଔପନ୍ୟାସିକ । ମରହଟ୍ଟା ଜାତିର ବୀରତ୍ୱ, ଏକତା, କର୍ମନିଷ୍ଠା, ସ୍ୱଦେଶ-ପ୍ରୀତିର ଅବିକୃତ ପ୍ରତିଛବି ହେଉଛି ତାଙ୍କର ଉପନ୍ୟାସସମୂହ । ତାଙ୍କ ସମ୍ପର୍କରେ M.V. Rajadhyaksha ଅଭିମତ ପ୍ରକାଶ କରି ଲେଖିଛନ୍ତି "The novel achieved abrupt maturity in Hari Narayan Apte (1864-1916) who, beginning with Madhli Sthiti (1885), wrote a few novels probing middle class life—the best of them being Pan Lakshyat Kon Gheto (1890-93), the moving story of a child-widow – before the historical romance claimed the major part of his interest. This reflected a shift in the writer and in his reader as well. Apte tempered his youthful ardour for social reform, imbibed from Agarkar, with a groping, after Ranade, for a compromise between reform and

tradition". (Contemporary Indian Literature, fourth Edition—1981, Page-155) ସ୍ୱତନ୍ତ୍ର ଆସ୍ପେକ୍ଟ ଉପନ୍ୟାସ 'ମାଧ୍ୟମରେ ମରହଟ୍ଟା ସମାଜରେ ସଂସ୍କାର ଆନୟନରେ ହୋଇଥିଲେ ସହାୟକ । ମାଲୟାଲମ୍ ସାହିତ୍ୟରେ ୧୮୮୭ ମସିହାରେ ଆପ୍ପୁନେଡ଼ୁନ୍ ଗାଡ଼ିଙ୍କ 'କୁନ୍ଦଲତା' ହେଉଛି ପ୍ରଥମ ଉପନ୍ୟାସ । ପରେ ଜନସାଧାରଣଙ୍କ କଥିତ ଭାଷାକୁ ନେଇ ୧୮୮୯ ମସିହାରେ ପ୍ରକାଶ ପାଇଥିଲା ଚନ୍ଦୁ ମେନନ୍‌ଙ୍କ ପ୍ରସିଦ୍ଧ ଉପନ୍ୟାସ 'ଇନ୍ଦୁଲେଖା' । ସମସାମୟିକ ସାମାଜିକ ସମସ୍ୟାମାନଙ୍କୁ ସେ ଏହି ଉପନ୍ୟାସରେ ରୂପ ଦେଇଛନ୍ତି । ଅସମୀୟା ସାହିତ୍ୟରେ ଆଦ୍ୟ ଔପନ୍ୟାସିକ ରୂପେ ପଦ୍ମନାଥ ଗୋହାଇଁ ସ୍ମରଣୀୟ । ତାଙ୍କର ଭାନୁମତୀ (୧୮୯୩) ହେଉଛି ଅସମୀୟା ସାହିତ୍ୟର ପ୍ରଥମ ଉପନ୍ୟାସ । ମାତ୍ର ୧୮୯୫ ମସିହାରେ ପ୍ରକାଶିତ ରଜନୀକାନ୍ତ ବର୍ଦ୍ଦୋଲାଇଙ୍କ 'ମିରିଜିଆରି' ଅସମୀୟା ସାହିତ୍ୟର ଏକ ବିଶିଷ୍ଟ ଉପନ୍ୟାସ । ହିନ୍ଦୀ ସାହିତ୍ୟରେ ଊନବିଂଶ ଶତକରେ ସେପରି କୌଣସି ଉଲ୍ଲେଖନୀୟ ଉପନ୍ୟାସ ସୃଷ୍ଟି ହୋଇ ନାହିଁ । ହିନ୍ଦୀ ଉପନ୍ୟାସର ବିଶିଷ୍ଟ ସାଧକ ହେଉଛନ୍ତି ମୁନ୍‌ସୀ ପ୍ରେମଚାନ୍ଦ୍ । ତାଙ୍କର ଉପନ୍ୟାସଗୁଡ଼ିକ ବିଂଶ ଶତକରେ ରଚିତ ।

ଭାରତର ବିଭିନ୍ନ ଭାଷାରେ ଊନବିଂଶ ଶତକରେ ରଚିତ ଉପନ୍ୟାସମାନଙ୍କ ମଧ୍ୟରୁ ଅଧିକାଂଶ ଥିଲା ଐତିହାସିକ । ଇତିହାସରୁ ବିଭବ କାହାଣୀ ସଂଗ୍ରହ କରି ଜାତିକୁ ଉଦ୍‌ବୋଧନ ଦେବାରେ ଏ ଶତକର ଔପନ୍ୟାସିକମାନେ କୁଣ୍ଠାବୋଧ କରିନଥିଲେ । ଅନ୍ୟ ଯେଉଁ କତିପୟ ଉପନ୍ୟାସ ସାମାଜିକ ଜୀବନକୁ ଭିତ୍ତିକରି ଗଢ଼ି ଉଠିଥିଲା, ସେସବୁରେ ଭାରତୀୟ ଗ୍ରାମ୍ୟଜୀବନର ହୃଦୟଗ୍ରାହୀ ଚିତ୍ର ପରିଲକ୍ଷିତ । ଓଡ଼ିଆ ଉପନ୍ୟାସ ସାହିତ୍ୟର ଆଦ୍ୟ ପର୍ଯ୍ୟାୟରେ ଏହି ଦୁଇଧାରା ସ୍ପଷ୍ଟ । ଓଡ଼ିଆ ଭାଷାରେ ରଚିତ ପ୍ରଥମ ଉପନ୍ୟାସ 'ପଦ୍ମମାଳୀ' ହେଉଛି ଏକ ଐତିହାସିକ ଉପନ୍ୟାସ । ରାମଶଙ୍କର ରାୟଙ୍କର ମଧ୍ୟ ଏକ ଐତିହାସିକ ଉପନ୍ୟାସ 'ବିବାସିନୀ' ଓଡ଼ିଆ ଉପନ୍ୟାସ ସାହିତ୍ୟର ଆଦ୍ୟ ପର୍ବରେ ରଚିତ । 'ପଦ୍ମମାଳୀ' ଉପନ୍ୟାସର ରଚୟିତା ହେଉଛନ୍ତି ଉମେଶଚନ୍ଦ୍ର ସରକାର ଓ ଏହାର ପ୍ରକାଶନ ସମୟ ୧୮୮୮ । ସେତେବେଳକୁ ପଡ଼ୋଶୀ ବଙ୍ଗ ସାହିତ୍ୟରେ ବଙ୍କିମଚନ୍ଦ୍ର ଉପନ୍ୟାସ ଲେଖି ଖ୍ୟାତିର ଚହଲ ପକାଇ ଦେଇଥିଲେ । ତାଙ୍କର ପ୍ରଭାବଶାଳୀ ଉପନ୍ୟାସ 'ଆନନ୍ଦ ମଠ'ର କବିତା 'ବନ୍ଦେ ମାତରଂ' ଧ୍ୱନିରେ ସମଗ୍ର ଭାରତ ପ୍ରକମ୍ପିତ ହୋଇଥିଲା । ଏହିପରି ପରିବେଶରେ ଉମେଶଚନ୍ଦ୍ର ସରକାର ରଚନା କରିଥିଲେ ତାଙ୍କର ଐତିହାସିକ ଉପନ୍ୟାସ 'ପଦ୍ମମାଳୀ' । ଏଥିରେ ଭାରତୀୟ ଜାତୀୟ ଆନ୍ଦୋଳନର ପଦଧ୍ୱନି ନାହିଁ, କିମ୍ବା କୌଣସି ଏକ ଗୁରୁତ୍ୱପୂର୍ଣ୍ଣ ସାମାଜିକ ସମସ୍ୟା ନାହିଁ ; କିନ୍ତୁ ଊନବିଂଶ ଶତକରେ ଗଢ଼ିଜାତ

ଅଞ୍ଚଳରେ ପ୍ରଜାମାନେ ଯେଉଁ ଶୋଷଣ, ନିର୍ଯ୍ୟାତନାର ସମ୍ମୁଖୀନ ହୋଇଥିଲେ, ତାର ହୃଦୟସ୍ପର୍ଶକାରକ ଇତିହାସ ହେଉଛି 'ପଦ୍ମମାଳୀ' ଉପନ୍ୟାସ ।

ଊନବିଂଶ ଶତକର ଗଡ଼ଜାତ ରାଜ୍ୟ ନୀଳଗିରି ହେଉଛି ଉପନ୍ୟାସର ଏକ ମୁଖ୍ୟ ସ୍ଥାନ । ନୀଳଗିରି ରାଜକର୍ମଚାରୀମାନଙ୍କର ପାଞ୍ଚଗଡ଼ ଆକ୍ରମଣ, ନାରୀ ଧର୍ଷଣ ଓ ବହୁବିଧ ଅତ୍ୟାଚାରର ଚିତ୍ର 'ପଦ୍ମମାଳୀ' ଉପନ୍ୟାସର ପ୍ରତ୍ୟେକ ପର୍ଯ୍ୟାୟରେ ପରିଦୃଷ୍ଟ । ୧୮୭୫ ମସିହା ଶିବରାତ୍ରି ଠାରୁ ଅଗଷ୍ଟ ମାସ ପ୍ରଥମ ସପ୍ତାହ ପର୍ଯ୍ୟନ୍ତ ନୀଳଗିରି ପାଞ୍ଚଗଡ଼ର ମେଳି, ହରିହର ଭ୍ରମରବରବାବୁଙ୍କ ନୀଳଗିରି ଆକ୍ରମଣ, କାର୍ତ୍ତିପଦାର ରାଜା ପକ୍ଷୀଷିତ ସିଂହଙ୍କ ଦ୍ୱାରା ପଦ୍ମମାଳୀ ଉଦ୍ଧାର ପ୍ରଭୃତି ସଂଘଟିତ ହୋଇଛି । ନୀଳଗିରିର ଦେଓ୍ୱାନ ଜାମାତା ଦୁର୍ଯ୍ୟୋଧନ ଦାସଙ୍କ ପାଞ୍ଚଗଡ଼ ଆକ୍ରମଣ ଓ ପକ୍ଷୀଷିତ ସିଂହ ଓ ଭ୍ରମରବରଙ୍କ ନୀଳଗିରି ପୁନଃ ଆକ୍ରମଣ ଇତ୍ୟାଦି ଘଟଣା ଇତିହାସ ସମର୍ଥିତ । ସେ ସମୟର ମାଜିଷ୍ଟ୍ରେଟ୍ ହେନେଷ୍ଟି ରିକେଟସ ଏହି ବିଦ୍ରୋହକୁ ଦୃଢ଼ ହସ୍ତରେ ଦମନ କରିଥିଲେ । ଉପନ୍ୟାସଟି ଇତିହାସର ଘଟଣାକୁ ଅବଲମ୍ବନ କରି ରଚିତ ହେଲେ ସୁଦ୍ଧା ଏଥିରେ ପ୍ରେମ-ପ୍ରଣୟ ମୁଖ୍ୟ ଭୂମିକା ଗ୍ରହଣ କରିଛି । ସୁତରାଂ, ଏ ଉପନ୍ୟାସଟିକୁ ହିଷ୍ଟୋରିକାଲ ରୋମାନ୍ସ କୁହାଯିବା ଯଥାର୍ଥ ହେବ ।

"ପଦ୍ମମାଳୀ' ଉପନ୍ୟାସରେ ଏକ ପକ୍ଷରେ ନାରୀ ଉପଭୋଗର ଦୁର୍ବାର ଲାଲସା, ଅପର ପକ୍ଷରେ ଶାଶ୍ୱତ ପ୍ରେମର ଐଶ୍ୱର୍ଯ୍ୟ ପ୍ରକଟିତ । ଦୁର୍ଯ୍ୟୋଧନ ଦାସ ପରି କାମୁକ,ଲମ୍ପଟ ସବୁଠାରେ ଖୋଜି ବୁଲୁଛି ନାରୀ । ତା'ପାଇଁ ନାରୀ ହେଉଛି କେବଳ ଉପଭୋଗର ସାମଗ୍ରୀ । କିନ୍ତୁ ପକ୍ଷୀଷିତ ସିଂହ ନାରୀକୁ ମର୍ଯ୍ୟାଦା ପ୍ରଦାନ କରି ତାକୁ ଆପଣାର କରିଛି । ଦେଉଳଆ ମଠର ପବିତ୍ର ପରିବେଶ ହୋଇଛି ପଦ୍ମମାଳୀ ଓ ପକ୍ଷୀଷିତଙ୍କ ପ୍ରେମର ପ୍ରକୃଷ୍ଟ କ୍ଷେତ୍ର । ସେମାନଙ୍କ ମନର ଭାବନା, ବିରହ, ଘନ ଘନ ଆଶ୍ଳେଷ, ମାନସିକ ଦ୍ୱନ୍ଦ୍ୱ ସାତିଶୟୀ ଢଙ୍ଗରେ ଔପନ୍ୟାସିକ ବର୍ଣ୍ଣନା କରିଛନ୍ତି । ମଠର ମହନ୍ତ ରାମାନୁଜ ହରିହର ଦାସ, ପକ୍ଷୀଷିତ ସିଂହ ଓ ପଦ୍ମମାଳୀଙ୍କ ମିଳନରେ ହୋଇଛନ୍ତି ସହାୟକ । ପରିଶେଷରେ, ସେ ନାୟିକାର ନାମ ଅନୁଯାୟୀ ଉପନ୍ୟାସଟିର ନାମକରଣ କରିଛନ୍ତି 'ପଦ୍ମମାଳୀ' ।

ପଦ୍ମମାଳୀ ଉପନ୍ୟାସର ଘଟଣାବିନ୍ୟାସରୀତି ନାଟକୀୟ । ପ୍ରଥମରୁ ନାଟକୀୟ ଜିଜ୍ଞାସା ସୃଷ୍ଟି କରି ନାୟକର ନାମକୁ ବହୁ ପୃଷ୍ଠା ପର୍ଯ୍ୟନ୍ତ ଔପନ୍ୟାସିକ ଗୋପନ ରଖିଛନ୍ତି । ବଙ୍କିମଚନ୍ଦ୍ର ତାଙ୍କର ଅଧିକାଂଶ ଉପନ୍ୟାସରେ ଏହି ପନ୍ଥା ଅବଲମ୍ବନ କରିଛନ୍ତି । ମନେହୁଏ ଉମେଶଚନ୍ଦ୍ର ସରକାର ତାଙ୍କ ଉପନ୍ୟାସଟି

ରଚନା କରିବାବେଳେ ବଙ୍କିମଚନ୍ଦ୍ରଙ୍କୁ ଆଦର୍ଶ ରୂପେ ଗ୍ରହଣ କରି ତାଙ୍କର ମାର୍ଗ ଅନୁସରଣ କରିଛନ୍ତି । ପୁଣି ବଙ୍କିମଚନ୍ଦ୍ର ତାଙ୍କ ଉପନ୍ୟାସରେ ଅନେକତ୍ର ଚରିତ୍ର ମୁହଁରେ ସାର୍ବଜନୀନ ସତ୍ୟର ଅବତାରଣା କରୁଥିଲେ । ଉମେଶଚନ୍ଦ୍ର 'ପଦ୍ମମାଳୀ'ର ବହୁସ୍ଥଳରେ ସମାଜ, ଜୀବନ, ରାଜନୀତି ସମ୍ପର୍କରେ ମଧ୍ୟ ଏ ଧରଣର ଚିରନ୍ତନ ଉକ୍ତିକୁ ବ୍ୟକ୍ତ କରିଛନ୍ତି । ଏଠାରେ ପ୍ରସଙ୍ଗକ୍ରମେ ଘଣ୍ଟଶିଳା ଗଡ଼ନାୟକଙ୍କର 'ରାଜଧର୍ମ' ସମ୍ପର୍କୀୟ ଉକ୍ତିକୁ ଉଦ୍ଧାର କରିଯାଇପାରେ । ଘଣ୍ଟଶିଳା ଗଡ଼ନାୟକ ରାଜଧର୍ମ ସମ୍ପର୍କରେ ଯେଉଁ ଅଭିମତ ଦେଇଛନ୍ତି, ତାହା ସାର୍ବକାଳୀନ ବାର୍ତ୍ତା । ତାହା ଏହିପରି : "ପ୍ରଜା ନେଇ ରାଜା, ଯେଉଁ ରାଜ୍ୟରେ ପ୍ରଜାମାନଙ୍କର ଧନ, ପ୍ରାଣ, ମାନ, ମହତ୍ତ୍ୱର ରକ୍ଷା ନାହିଁ, ଈଶ୍ୱର କେବେଁ ସେ ରାଜ୍ୟର ମଙ୍ଗଳ କରିବେ ନାହିଁ । ଆଉ ଯେଉଁ ଦୁଷ୍ଟବୁଦ୍ଧି ସେ ସବୁର ମୂଳ, ତାହା ମୁଣ୍ଡରେ ଗ୍ରଧାଚକ୍ର ପଡ଼ିବ ।" (ପଦ୍ମମାଳୀ—୨୬ଶ ପରିଚ୍ଛେଦ) ପଦ୍ମମାଳୀ ଉପନ୍ୟାସରେ ଏଇ ଧରଣର ଉକ୍ତିମାନଙ୍କର ବିପୁଳ ସମ୍ଭାର ଅବଶ୍ୟ ଉପଲଭ୍ୟ ।

ଊନବିଂଶ ଶତକରେ ଭାରତୀୟ ଭାଷାମାନଙ୍କରେ ରଚିତ ଉପନ୍ୟାସଗୁଡ଼ିକ ପାଠକର ମନୋରଞ୍ଜନ ପାଇଁ ଥିଲେ ଅତ୍ୟନ୍ତ ସଚେତନ । ପାଠକର ମନ ଛୁଇଁବା ଯାଇଁ ପରିହାସ, ଅବାସ୍ତବ ରୋମାଞ୍ଚକର ଘଟଣାବଳୀର ବର୍ଣ୍ଣନାରେ ଔପନ୍ୟାସିକମାନେ ନିଷ୍ଠା ପ୍ରଦର୍ଶନ କରୁଥିଲେ । ଏ ହେତୁ ଉପନ୍ୟାସର ଘଟଣାମାନଙ୍କ ସହିତ କୌଣସି ସମ୍ପର୍କ ନଥିବା କେତେକ ବିଷୟକୁ ଔପନ୍ୟାସିକମାନେ ଅଙ୍ଗୀଭୂତ କରୁଥିଲେ । ଏପରିକି ବଙ୍କିମଚନ୍ଦ୍ରଙ୍କ ପରି ପ୍ରସିଦ୍ଧ ଔପନ୍ୟାସିକ ଏଥିରୁ ବର୍ତ୍ତି-ନାହାନ୍ତି । ଏଠାରେ 'ପଦ୍ମମାଳୀ' ଉପନ୍ୟାସରୁ ମହନ୍ତଙ୍କ ରୂପବର୍ଣ୍ଣନା ଅଂଶଟି ଦେଖନ୍ତୁ—"ମହନ୍ତଙ୍କର ପ୍ରାୟ ଅଶୀତି ବର୍ଷ ହୋଇଥିଲା । କିନ୍ତୁ ତାହାଙ୍କର ଦଶନେନ୍ଦ୍ରିୟର ତୀକ୍ଷ୍ଣତା ବର୍ଦ୍ଧନ କରିବା ନିମନ୍ତେ ସଲମନ କମ୍ପାନୀ (Soloman & Co) ଭାରତବର୍ଷକୁ ଆସିନଥିଲେ କିମ୍ବା ତାହାଙ୍କର ପାକଶକ୍ତିରେ ସାହାଯ୍ୟ କରିବା ପାଇଁ କୌଣସି ଆମେରିକାନ୍ ଡେଣ୍ଟିଷ୍ଟ (American Dentist ) ଆସିନଥିଲେ । ମହନ୍ତ ଗୌରବର୍ଣ୍ଣ । ଅଶୀତି ବର୍ଷରେ ସୁଦ୍ଧା ତାହାଙ୍କର ଗାତ୍ର ଚର୍ମ ପଳିତପ୍ରାପ୍ତ ହୋଇନଥିଲା ।" ପଦ୍ମମାଳୀରେ ଏପରି ଅନାବଶ୍ୟକ ବର୍ଣ୍ଣନାଗୁଡ଼ିକ କେବଳ କାହାଣୀକୁ ଅଯଥା ସ୍ଫୀତକୃତ କରିଛୁ ।

'ପଦ୍ମମାଳୀ' ଉପନ୍ୟାସର ଭାଷା ଅନେକାଂଶରେ ସାଧୁଭାଷା । ଊନବିଂଶ ଶତକରେ ସଂସ୍କୃତ ଶବ୍ଦର ବହୁଳ ବ୍ୟବହାର ଗଦ୍ୟର ଭାଷାରେ ସର୍ବତ୍ର ସୁଲଭ ଥିଲା । ଏ ଧରଣର ଗଦ୍ୟର ପ୍ରବଳ ପ୍ରଭାବରୁ ଔପନ୍ୟାସିକ ଉମେଶଚନ୍ଦ୍ର ମୁକ୍ତ

ନ ଥିଲେ । ବଙ୍ଗଳା ସାହିତ୍ୟରେ, ବିଶେଷ କରି ବିଦ୍ୟାସାଗର ସଂସ୍କୃତ ଭାଷାର ବ୍ୟାପକ ବ୍ୟବହାର କରି ଗଦ୍ୟରଚନା କରୁଥିଲେ । ବଙ୍କିମଚନ୍ଦ୍ର ସାଧାରଣ ଜନତାର ଭାଷା ସହ ସଂସ୍କୃତ ଶବ୍ଦମାନଙ୍କୁ ମିଶାଇ ଏକପ୍ରକାର ଗୁରୁ ଲଘୁ ଭାଷାରେ ବଙ୍ଗଳା ଗଦ୍ୟକୁ ଦେଲେ ନୂତନ ଜୀବନ୍ୟାସ । ଉମେଶଚନ୍ଦ୍ର ବଙ୍କିମଚନ୍ଦ୍ରଙ୍କ ଉପନ୍ୟାସ ଶୈଳୀକୁ ଅନୁକରଣ କରିଛନ୍ତି ସତ୍ୟ; କିନ୍ତୁ ତାଙ୍କର ଭାଷା ବିନ୍ୟାସ କୌଶଳକୁ ଅନୁସରଣ କରିପାରିନାହାନ୍ତି, ବରଂ ତାଙ୍କ ଉପନ୍ୟାସରେ ସର୍ବତ୍ର ବିଦ୍ୟାସାଗରଙ୍କ ଶିଷ୍ଟ-ଶବ୍ଦବହୁଳ ଗଦ୍ୟରୀତିର ଅଦ୍ଭୁତ ପରିପ୍ରକାଶ ଦେଖିବାକୁ ମିଳେ । ସଂସ୍କୃତ ବହୁଳ ଶବ୍ଦର ଗୁରୁଗମ୍ଭୀର ସମାବେଶରେ ତାଙ୍କ ଗଦ୍ୟ ହୋଇଛି, ଏହିପରି, "ଗୋ-ଶୂକରଖାଦକ ମ୍ଳେଚ୍ଛ ସାହେବ ଚର୍ମପାଦୁକା ସହିତ ହିନ୍ଦୁ ଗୃହସ୍ଥର ପବିତ୍ର ଅନ୍ତଃପୁର ମଧ୍ୟରେ ପ୍ରବେଶ କରି କୁଳକନ୍ୟାକୁ ତାହାର ବିଲାସ ଚକ୍ଷୁରେ ଦେଖି ମଦ୍ୟ ଓ ମାଂସର ବ୍ୟବସ୍ଥା ଦେବା ଏହା କେବେହେଁ ମଞ୍ଜୁର କରାଯାଇପାରେ ?" ଏ ଧରଣର ବାକ୍ୟରେ ଦେଶଜ ଶବ୍ଦ ତୁଳନାରେ ସଂସ୍କୃତ ଶବ୍ଦମାନଙ୍କର ପ୍ରୟୋଗ ଯଥେଷ୍ଟ ଅଧିକ ।

'ମିରଜାଆସି' ଉପନ୍ୟାସରେ ଅସମୀୟା ଲେଖକ ରଜନୀକାନ୍ତ ମଧ୍ୟ ବହୁ ସ୍ଥଳରେ ତତ୍ସମ ଶବ୍ଦମାନଙ୍କୁ ଗୁରୁତ୍ୱ ଦେଇଛନ୍ତି । ଭାରତୀୟ ଭାଷାମାନଙ୍କରେ ଯେଉଁ ସମୟରେ ଉପନ୍ୟାସ ଜନ୍ମ ନେଇଛି, ସେତେବେଳକୁ ଗଦ୍ୟ-ସାହିତ୍ୟର ଯଥେଷ୍ଟ ବିକାଶ ହୋଇନଥିଲା । ସୁତରାଂ, ଉପନ୍ୟାସରେ ପ୍ରବନ୍ଧସୁଲଭ ଭାଷା, ନୀତି ଉପଦେଶର ବିସ୍ତୃତ ବିବରଣୀ, ଆଲଙ୍କାରିକ ଶୈଳୀ ବିଶେଷ ରୂପେ ପ୍ରାଧାନ୍ୟଲାଭ କରିଥିଲା । ତେଲୁଗୁ ଓ ତାମିଲ ସାହିତ୍ୟର ଆଦ୍ୟପର୍ଯ୍ୟାୟର ଉପନ୍ୟାସଗୁଡ଼ିକ ଥିଲା ଗଦ୍ୟକାବ୍ୟ ପରି କ୍ଲିଷ୍ଟ । ଉମେଶଚନ୍ଦ୍ର ଓଡ଼ିଆ ସାହିତ୍ୟର ଆଦ୍ୟ ଔପନ୍ୟାସିକ ହୋଇଥିବାରୁ ସେ ତାଙ୍କ ଆଗରେ କୌଣସି ଗଦ୍ୟସ୍ରଷ୍ଟାର ଆଦର୍ଶ ନଦେଖି, ଏପରି ସଂସ୍କୃତବହୁଳ ଆଲଙ୍କାରିକ ଗଦ୍ୟରେ 'ପଦ୍ମମାଳୀ' ଉପନ୍ୟାସ ରଚନା କରିଛନ୍ତି ।

ଊନବିଂଶ ଶତକରେ ଭାରତୀୟ ଭାଷାମାନଙ୍କରେ ରଚିତ ଉପନ୍ୟାସଗୁଡ଼ିକ ଗୋଟିଏ ଗୋଟିଏ ଆଦର୍ଶ ନେଇ ଆତ୍ମପ୍ରକାଶ କରିଥିଲା । ଧର୍ମ ବା ସତ୍ୟର ଜୟ ଓ ପାପର ଶାସ୍ତି, ଏହା ଥିଲା ସେ ସମୟର ଉପନ୍ୟାସମାନଙ୍କର ସବୁଠାରୁ ବଡ଼ ଆଦର୍ଶ । ସଂସାରରେ ଘଟୁଥିବା ସୃଷ୍ଟିବହିର୍ଭୂତ ଅନ୍ୟାୟ (problem of evil) କୁ ଦେଖାଇ; ଜନସାଧାରଣଙ୍କ ନିକଟରେ ଲୋଭୀ, ହିଂସ୍ରକ, ସ୍ୱାର୍ଥପର, କୁଚକ୍ରୀ ଗୋଷ୍ଠୀକୁ ସମୁଚିତ ଦଣ୍ଡବିଧାନ କରିବାକୁ ଊନବିଂଶ ଶତକର ବହୁ ଔପନ୍ୟାସିକ ଶ୍ରେୟ ମଣିଛନ୍ତି । ସଂସାରକୁ ନୈତିକତାର ବାଣୀ ଶୁଣାଇବା ଲେଖକ ପକ୍ଷରେ

ଥିଲା ଅନେକାଂଶରେ ଗୋଟିଏ ବଡ଼ କଥା । ଇତିହାସର କାହାଣୀକୁ ନେଇ ତା ଭିତରେ ସାମାଜିକ ଜୀବନକୁ ପ୍ରତିବିମ୍ବିତ କରିବା ପରି ପ୍ରସଙ୍ଗମାନ ଔପନ୍ୟାସିକ ସୃଷ୍ଟି ଦେଇଥିଲେ । ବଙ୍ଗଳା ସାହିତ୍ୟର ଅନ୍ୟତମ ଔପନ୍ୟାସିକ ରମେଶଚନ୍ଦ୍ର ଦତ୍ତ ଇତିହାସ ଭିତରେ ମାନବଜୀବନକୁ ଉଦ୍‌ବୁଦ୍ଧ କରିବା ପରି ବହୁ ପ୍ରସଙ୍ଗର ଅବତାରଣା କରିଛନ୍ତି । ଉମେଶଚନ୍ଦ୍ର ଙ୍କର 'ପଦ୍ମମାଳୀ' ଉପନ୍ୟାସରେ ଇତିହାସର ଘଟଣା ଭିତରେ ତତ୍କାଳୀନ ସାମାଜିକ ଜୀବନଧାରା ସମ୍ବନ୍ଧରେ ବହୁ ଜଣା-ଅଜଣା ବିଷୟକୁ ସ୍ଥାନ ଦେଇଛନ୍ତି । ମନେହୁଏ 'ପଦ୍ମମାଳୀ' ଉପନ୍ୟାସରେ ତତ୍କାଳୀନ ସାମାଜିକ ଜୀବନଧାରାର ଏସବୁ ପରିପ୍ରକାଶ ମୂଳରେ ଦୁଇଟି କାରଣ ଥାଇପାରେ । ପ୍ରଥମତଃ ଲେଖକ ଥିଲେ ଗଡ଼ଜାତର ଜଣେ ପଦସ୍ଥ କର୍ମଚାରୀ । ଦ୍ୱିତୀୟତଃ ଲେଖକ ଜଣେ ବଙ୍ଗୀୟ । ଏ ଦୃଷ୍ଟିରୁ ସେ ରମେଶଚନ୍ଦ୍ର ଦତ୍ତଙ୍କ ଉପନ୍ୟାସମାନ ଅଧ୍ୟୟନ କରିଥିବା କିଛି ବିଚିତ୍ର ନୁହେଁ । ଏକ ପକ୍ଷରେ ଗଡ଼ଜାତରେ ଗୃହଜୀବନର ସ୍ୱୀୟ ଅନୁଭୂତି ଓ ଅଭିଜ୍ଞତା, ଅପର ପକ୍ଷରେ ରମେଶଚନ୍ଦ୍ର ଦତ୍ତଙ୍କ ପ୍ରଭାବରେ ପ୍ରଭାବିତ ହୋଇ ଉମେଶଚନ୍ଦ୍ର ତାଙ୍କ 'ପଦ୍ମମାଳୀ' ରେ ତତ୍କାଳୀନ ସାମାଜିକ ଜୀବନ ସମ୍ପର୍କରେ ନାନା କଥା କହିଛନ୍ତି । ଏ ସବୁକୁ ନେଇ ଊନବିଂଶ ଶତକର ସାମାଜିକ ଇତିହାସ ରଚନା କରାଯାଇ ପାରେ । ସୁତରାଂ, ପଦ୍ମମାଳୀକୁ ଏକାଧାରରେ ଐତିହାସିକ ଉପନ୍ୟାସ ଓ ଊନବିଂଶ ଶତକର ଆଦପାଦର ସାମାଜିକ ଇତିହାସ କୁହାଯାଇପାରେ ।

ଯେଉଁ ସମୟରେ ଗଦ୍ୟର ଏକାନ୍ତ ଅଭାବ, ସବୁକିଛି ଚିରଚରିତ ପନ୍ଥାରେ ଗଢ଼ୁଥିଲା, ସେ ସମୟରେ ଉମେଶଚନ୍ଦ୍ର ସରକାର ଉପନ୍ୟାସ ରଚନା କରି ଯଥାର୍ଥରେ ନିଜର ବିସ୍ମୟକର ପ୍ରତିଭାର ପରିଚୟ ଦେଇଛନ୍ତି । ପୁଣି ଜଣେ ବଙ୍ଗୀୟ ବ୍ୟକ୍ତି ପକ୍ଷରେ ଏ ଦିଗରେ ଉଦ୍ୟମ ଆହୁରି ଆଶ୍ଚର୍ଯ୍ୟର ବିଷୟ । 'ପଦ୍ମମାଳୀ' ପ୍ରଥମ ସଂସ୍କରଣର ଭୂମିକାରେ ନିଜର ଲେଖକୀୟ ଅଭିଭାଷଣରେ ସେ ଏକଥା ସ୍ୱୀକାର କରିଛନ୍ତି—"ଉତ୍କଳ-ସାହିତ୍ୟର ବର୍ତ୍ତମାନ ଅବସ୍ଥାରେ ସ୍ୱ କପୋଳକଳ୍ପିତ ଗ୍ରନ୍ଥ ରଚନା କରିବାର ଉଦ୍ୟମକୁ ଅସୀମ ସାହସିକତାର କାର୍ଯ୍ୟ ବୋଲିବାକୁ ହେବ । ଆମ୍ଭେ ଏହି ଅସୀମ ସାହସିକତାର କାର୍ଯ୍ୟ ଅନୁଷ୍ଠାନ କରୁଅଛୁ । ଉତ୍କଳ ଭାଷାନଭିଜ୍ଞ ଆମ୍ଭେ ହାସ୍ୟାସ୍ପଦ ହେବୁ ଜାଣି ସୁଦ୍ଧା, ଏ ଅନୁଷ୍ଠାନରେ ବ୍ରତୀ ହୋଇଅଛୁ । ବ୍ରତ ସଫଳ ହେଉ, ବା ନିଷ୍ଫଳ ହେଉ ଆମ୍ଭେ ଆଉ ପଶ୍ଚାତ୍‌ପଦ ହୋଇ ନ ପାରୁ । ଜନସମାଜର ପ୍ରୀତି ସମ୍ପାଦନ ଓ ଉତ୍କଳ ସାହିତ୍ୟର ଗୌରବ ବର୍ଦ୍ଧନକୁ ଲକ୍ଷ୍ୟ କରି ଅକୃତକାର୍ଯ୍ୟ ହେଲେ ହେଁ ଏପରି ମହତ୍ କାର୍ଯ୍ୟର ଅନୁଷ୍ଠାନ କରିଥିଲୁଁ, ଏହା ଆମର ନୈରାଶ୍ୟ ସମୟରେ ଶାନ୍ତି ପ୍ରଦାନ କରିବ ।"

(ପଦ୍ମମାଳୀ-ପ୍ରଥମ ସଂସ୍କରଣର ଭୂମିକା-୧୯ ଅକ୍ଟୋବର ୧୮୮୮) ଲେଖକଙ୍କ ଏହି ମନ୍ତବ୍ୟରୁ ଉପନ୍ୟାସ ରଚନା ପ୍ରତି ତାଙ୍କର ନିଷ୍ଠା ଓ ଓଡ଼ିଆ ଭାଷା ପ୍ରତି ଶ୍ରଦ୍ଧା ସହଜରେ ଅନୁମାନ କରାଯାଇପାରେ । 'ପଦ୍ମମାଳୀ' ରଚନାରେ ସେ ହୁଏତ ବଙ୍ଗୀୟ ଭାଷା ଶୈଳୀର ହୋଇଛନ୍ତି ଏକାନ୍ତ ଅନୁକାରୀ । ସ୍ଥଳ ବିଶେଷରେ ଉପନ୍ୟାସରେ ଆନୁଷଙ୍ଗିକ ଶବ୍ଦ ପ୍ରୟୋଗ କରିବାରେ ସେ ହୋଇଛନ୍ତି ଅସମର୍ଥ । କିନ୍ତୁ ଓଡ଼ିଆରେ ସମ୍ପୂର୍ଣ୍ଣ ଉପନ୍ୟାସଟିଏ ଲେଖି ପାଠକ ଆଗରେ ଥୋଇବା ପାଇଁ ଯୁବକ ଉମେଶଚନ୍ଦ୍ରଙ୍କର ସେଦିନର ଯେଉଁ ଆଗ୍ରହ, ତାହା ଯଥାର୍ଥରେ ପ୍ରଶଂସନୀୟ । ଯେଉଁ ସମୟରେ ଭାରତୀୟ ଭାଷାମାନଙ୍କରେ ଉପନ୍ୟାସ ରଚନାର ଶୁଭାରମ୍ଭ, ସେଇ ସମୟରେ ଉମେଶଚନ୍ଦ୍ର ଭାରତର ଅନ୍ୟତମ ପ୍ରସିଦ୍ଧ ଭାଷା ଓଡ଼ିଆରେ ଉପନ୍ୟାସ ରଚନା କରି ସ୍ୱକୀୟ ନୂତନ ଚିନ୍ତାଧାରାର ପରିଚୟ ଦେଇଛନ୍ତି । ପରମ୍ପରା ପ୍ରତି ଦୃଷ୍ଟି ନଦେଇ ଏକ ବିସ୍ତୀର୍ଣ୍ଣ ଭୂମିରେ ସେ ନିର୍ମାଣ କରିଛନ୍ତି ନିଜର ସାହିତ୍ୟ-ସୌଧ । ସ୍ୱକୀୟ ପ୍ରତିଭାରେ ଗଭୀର ଆତ୍ମପ୍ରତ୍ୟୟ ପୋଷଣ କରି ଉମେଶଚନ୍ଦ୍ର ସମସ୍ତ ପ୍ରତିକୂଳ ପରିସ୍ଥିତିରେ 'ପଦ୍ମମାଳୀ' ରଚନା କରି ଓଡ଼ିଆ ଉପନ୍ୟାସ ସାହିତ୍ୟର ଅଗ୍ରଦୂତ ଭୂମିକାରେ ସମ୍ମାନିତ ହୋଇଛନ୍ତି ।

